ଅନ୍ନପୂର୍ଣ୍ଣା ଥିଏଟର—'ଏ' ଗ୍ରୁପ୍‌ଦ୍ୱାରା ସଂଗୌରବେ ଅଭିନୀତ

# ତୋଳା କନିଆଁ


ନାଟ୍ୟକାର

**ଶ୍ରୀ ବ୍ୟୋମକେଶ ତ୍ରିପାଠୀ**



ପ୍ରକାଶକ:

**ୟୁନାଇଟେଡ୍ ବୁକ୍ ହାଉସ୍**

—କଟକ-୨—

ପ୍ରଥମ ପ୍ରକାଶ :
ବିଷୁବ ସଂକ୍ରାନ୍ତି, ୧୯୬୫
ପୁନର୍ମୁଦ୍ରଣ :
ଦଶହରା, ୧୯୭୦

ପ୍ରଚ୍ଛଦ:
ଶ୍ରୀ ବିଚିତ୍ରାନନ୍ଦ ମହାନ୍ତି

ମୁଦ୍ରାକର :
ଶ୍ରୀ ଜୟନ୍ତ ଷାଠିଆ
ଶ୍ରୀ ରାଧାନାଥ କୋ-ଅପରେଟିଭ୍ ପ୍ରେସ୍, କଟକ-୨

ମୂଲ୍ୟ :
[redacted]

# ନିଜକଥା



ନାଟକରେ ସାମାଜିକ ଚିତ୍ର ପ୍ରତିଫଳିତ ହୁଏ । ନାଟ୍ୟକାର ସାମାଜିକ ଜୀବ ହୋଇଥିବା ହେତୁ ନାନା ଘଟଣାରୁ ଅନୁଭୂତି ନେଇ ନାଟକ ରଚନା କରେ । ତେଣୁ ନାଟକରେ ପ୍ରକୃତ ଅନୁଭୂତିର ପ୍ରତିଫଳନ ହୁଏ ବୋଲି କହିଲେ ଭୁଲ ହେବ ନାହିଁ । ରଙ୍ଗମଞ୍ଚରେ ପରିବେଷଣ କରିବାପାଇଁ ଅନୁଭୂତି ଉପରେ କିଛି ପୁଟ ଚଢ଼ାଇ ରଙ୍ଗ ବୋଳିବାକୁ ପଡ଼େ । ମାତ୍ର ମୂଳ ଘଟଣା, ନାଟକର ଉଦ୍ଦେଶ୍ୟ ଓ ନାଟ୍ୟକାରର ଦୃଷ୍ଟିକୋଣରେ ପରିବର୍ତ୍ତନ ହୁଏ ନାହିଁ ।

ତେଣୁ "ଚୋରା କନିଆଁ" ମୋର ଅନୁଭୂତି । ଏ ବିଷୟରେ ଦିନକର ଘଟଣା ମୁଁ କହେଁ । ଦିଲ୍ଲୀରେ ପଢ଼ୁଥାଏ, ୧୯୫୮ ମସିହା; କେନ୍ଦ୍ର ସରକାର ବେଶ୍ୟାବୃତ୍ତି ନିରୋଧ ପାଇଁ ବିଲ୍ ପାଶ୍ କରିବାକୁ ସ୍ଥିର କରିଥାନ୍ତି । ପାର୍ଲିଆମେଣ୍ଟରେ ଆଲୋଚନା ହେବାର ଥାଏ । ଦେଖିଲି, ଶହ ଶହ ସଂଖ୍ୟାରେ ବେଶ୍ୟାଙ୍କ ପଟୁଆର । ସେମାନେ ସରକାରଙ୍କ ସିଦ୍ଧାନ୍ତ ବିରୁଦ୍ଧରେ ପ୍ରତିବାଦ ଜଣାଇବାକୁ ପାର୍ଲିଆମେଣ୍ଟ ଆଗରେ ବସିରହିଲେ ସାରାଦିନ । ଜନସାଧାରଣ ଥଟ୍ଟା କରୁଥାନ୍ତି, ଅଶ୍ଳୀଳ ମନ୍ତବ୍ୟ ପ୍ରକାଶ କରୁଥାନ୍ତି । ମାତ୍ର ମୁଁ ସେଇ ଅତ୍ୟାଚାରିତ, ଅବହେଳିତ ଗୋଷ୍ଠୀର ଅନ୍ତର ଚିରି ଦେଖିବାକୁ ଚେଷ୍ଟା କରୁଥାଏ । ପ୍ରକୃତରେ ଯଦି ବିଲ୍ ପାଶ୍ ହୋଇଯାଏ ଏମାନେ କ'ଣ କରିବେ ? ଯାହାଙ୍କର ଶିକ୍ଷାଦୀକ୍ଷା ନାହିଁ, ଅନ୍ୟ କୌଣସି କାମ ମୋଟାମୋଟି ଜାଣନ୍ତି ନାହିଁ, ସେମାନେ ପେଟ ପୋଷିବେ କିମିତି ? ସମାଜ କ'ଣ ଏମାନଙ୍କୁ ଗ୍ରହଣ କରିବ ? ଏମାନେ କ'ଣ ମା, ଭଉଣୀ, ବୋହୂ, ସ୍ତ୍ରୀ ହୋଇ ପାରିବେ ? ଲୋକେ ଏମାନଙ୍କୁ କ'ଣ ନିଜଘରେ ଘରକରଣୀ ରୂପେ ମଧ୍ୟ ରଖିବାର ଉଦାରତା ଦେଖାଇବେ ?

କେବଳ ସେ ଦିନ ନୁହେଁ । ଅନେକ ଦିନ ଯାଏ ଏଇ ପ୍ରଶ୍ନ ମନଭିତରେ ଘୂରି ବୁଲିଲା । ଦିଲ୍ଲୀରୁ ଓଡ଼ିଶା ଫେରିଲି; ହଠାତ୍

ଆଖିଆଗରେ ଦେଖିଲି ଜଣେ ବନ୍ଧୁ ସମସ୍ତଙ୍କ ବିରୁଦ୍ଧରେ ବିଦ୍ରୋହ କରି ଜଣେ ପତିତାକୁ ବିବାହ କରି ସୁଖରେ ସଂସାର କରିଛନ୍ତି । ଜନସାଧାରଣଙ୍କ ଆଖିରେ ସେ ବନ୍ଧୁଟି ମୋର "ଏକବାଗିଆ" "ଆଡ଼ବାଇଆ" ଇତ୍ୟାଦି । ମୁଁ ବିସ୍ମୟରେ ଗୃହ୍ନିଁ ରହିଥିଲି; ବନ୍ଧୁଙ୍କୁ ନୁହେଁ, ଏଇ ଜନସାଧାରଣଙ୍କୁ । ଯୋଉ ଉଦାରତା, ଯୋଉ ମହାମାନବିକତା ଏଇ ଜନସାଧାରଣଙ୍କର ସଙ୍କୀର୍ଣ୍ଣ ଓ ସୀମିତ ଚିନ୍ତାଧାରା ମଧ୍ୟରେ ନାହିଁ, ସେଇ ମହତ୍ତ୍ୱ ଗୁଣ ଗୁଡ଼ିକ ଯଦି କୌଣସି ଲୋକଠାରେ ଦେଖାଯାଏ, ତେବେ ସେ ଲୋକ ହେବ "ଏକବାଗିଆ, ଆଡ଼ବାଇଆ" !! ନିଜକୁ ମୁଁ ଘୃଣା କରିଚି, ନିଜକୁ ମୁଁ ଧିକ୍କାର ଦେଇଚି—ମୁଁ ଏଇ ସମାଜର ଜଣେ ବୋଲି ।

ବେଶ୍ୟା ତ ହେଲେ ଅସାମାଜିକ ଜୀବ; ତାଙ୍କ କଥା ଏଥର ଥାଉ । ଆମ ସାମାଜିକ ମନୁଷ୍ୟମାନଙ୍କୁ ଦେଖିଲି । ଯୋଉମାନେ ବେଶ୍ୟାଙ୍କୁ ଘୃଣା କରନ୍ତି, 'ନୈତିକତା', 'ଆଦର୍ଶ' ନେଇ ବଡ଼ ବଡ଼ ଭାଷଣ ଦିଅନ୍ତି, ଉପଦେଶ ଦିଅନ୍ତି, ତାଙ୍କ ଭିତରୁ ବେଶି ଭାଗ ଚୋର, ଜୁଆଚୋର, କଳାବଜାରୀ, ଗାଲୁଆ, ଅହଙ୍କାରୀ, ଗର୍ବୀ, ସ୍ୱୈଣ, ମାଇପିବୋଲା । ତା ହେଲେ ଭଲ କିଏ ? ଭଲ ହେବାର ଚେଷ୍ଟା ବା ଇଚ୍ଛା କାହାର ଅଛି ? ଯଦି ଏଇ ପ୍ରଶ୍ନ କାହାରିକୁ ପଚାରିଲେ, ଉତ୍ତର ପାଏ—"କ'ଣ କରିବା ? **Struggle for existence** ! ଆଜକାଲିକା ସଂସାରରେ ବଞ୍ଚିରହିବାକୁ ତ ହେବ ?" ସତେ ଯେମିତି ବଞ୍ଚିରହିବାପାଇଁ କଦର୍ଯ୍ୟତା, କୁପଥହିଁ ଏକମାତ୍ର ପନ୍ଥା !

ନାଟକଟି ନିଜେ ପରିଚାଳନା ଦେବାକୁ ଯାଇ ମୁଁ ବିପଦ ବରଣ କରିଚି । କାରଣ ପରିଚାଳକ ନାଟ୍ୟକାରଙ୍କ ଦୋଷାଦୋଷ ବିଚାର କରିବାରେ ଯେତିକି ନିରପେକ୍ଷ ହେବା ଉଚିତ, ମୁଁ ସେତିକି ହୋଇ-ପାରିବି କି ନାହିଁ ସନ୍ଦେହ ଥିଲା । ତେବେ ମଧ୍ୟ ଦୁଃସାହସ କରିଛି ।

ନାଟକ ପ୍ରସ୍ତୁତ ସମୟରେ ଅନେକ ବନ୍ଧୁ ରଙ୍ଗ ପରିବର୍ତ୍ତନ କରିଛନ୍ତି । କେହି ପାର୍ଟନେଇ ମଝିରୁ ଗୁଡ଼ଦେଇ ଚାଲିଯାଇଛନ୍ତି, କେହି ଉପସ୍ଥିତ ରହି ମଧ୍ୟ ଭିନ୍ନ ଭିନ୍ନ ଛଳନାରେ ସାହାଯ୍ୟ କରି-ନାହାନ୍ତି । ଏହିମାନେ ତ ମୋର ପୂର୍ବ ନାଟକଗୁଡ଼ିକରେ ଭୂରିଭୂରି ପ୍ରଶଂସା ପାଇଛନ୍ତି ଦର୍ଶକଙ୍କଠାରୁ; ମାତ୍ର ମୋର ଲିଖିତ ପରିଚାଳିତ ନାଟକରେ ସେମାନେ କାହିଁକି ଶତ୍ରୁତା ଓ ବିଶ୍ୱାସ-ଘାତକତା କରିଛନ୍ତି ମୋ ସହିତ ? ମୁଁ ବୁଝିପାରିନି । କିନ୍ତୁ ଦ୍ୱିଗୁଣ ଆନନ୍ଦ ଉତ୍ସାହ ପାଇଚି, ଯେତେବେଳେ ଦେଖିଚି ନୂତନ ସୃଷ୍ଟି ମୋର ସାର୍ଥକ ହୋଇଚି । ଯେଉଁମାନେ ନୂଆକରି ଗୁରୁ ଦାୟିତ୍ୱ ନେଇଛନ୍ତି ଓ ତାଙ୍କର ଦାୟିତ୍ୱ ସୁଚାରୁରୂପେ ସମାପନ କରିବାକୁ ଆପ୍ରାଣ ଚେଷ୍ଟା କରିଚନ୍ତି, ସେମାନେ ହେଲେ କୁଞ୍ଜଲତା, ବେବି ମିନା ଓ ସଙ୍ଗୀତ-ପରିଚାଳକ ପୂର୍ଣ୍ଣଚନ୍ଦ୍ର ମିଶ୍ର । ଅଧ୍ୟବସାୟ, ଏକାଗ୍ରତା ଯେ ସେମାନଙ୍କୁ ନିଶ୍ଚୟ ଶୀର୍ଷକୁ ନେଇଯିବ, ଏଥିରେ ମୁଁ ନିଃସନ୍ଦେହ ।

ମୁଁ ନାଟ୍ୟକାର । ତେଣୁ ପ୍ରତ୍ୟେକଟି ଚରିତ୍ର ମୋର ଏକାନ୍ତ ନିଜର । ବିଶେଷତଃ ନାୟିକା ମଧୁ ଓ ସହନାୟକ ଦୁରି, ଏ ଦୁଇଟି ଚରିତ୍ର ମୋର ନିଜର ଅଶ୍ରୁ ସମ୍ଭୂତ । ଏମାନେ ଯେପରି ମୋର ଅବିଚ୍ଛେଦ୍ୟ ଅଙ୍ଗ । ମଧୁ ଚରିତ୍ରରେ ପୂର୍ଣ୍ଣିମାଙ୍କ ଅଭିନୟ ବହୁମୁଖୀ, ତେଣୁ ଅତୁଳନୀୟ ! ନୃତ୍ୟ-ଗୀତ ମୁଖରା, ଚଳଚଞ୍ଚଳ ଗିରିନିର୍ଝରିଣୀ ଚନ୍ଦ୍ରିକା, ପୁଣି ବ୍ୟଥିତା ପରିତ୍ୟକ୍ତା ମଧୁ—ଦୁଇଟି ବିପରୀତ-ମୁଖୀ ଚରିତ୍ରର ପରିବେଷଣରେ ପୂର୍ଣ୍ଣିମା ସଜୀବ ।

ଦୁରି ଚରିତ୍ରରେ ପ୍ରିୟ ବନ୍ଧୁ ଦୁଃଖିରାମ ବାବୁ ପ୍ରାଣ ଢାଳି ଦେଇଛନ୍ତି । ବାହ୍ୟ ରୁକ୍ଷତା ଓ ଦୁର୍ଦ୍ଧର୍ଷତା ଭିତରେ କୋମଳତା ଓ ଆତ୍ମତ୍ୟାଗର ଆଦର୍ଶ ଲୁଚାଇ ରଖି ଅଭିନୟ ଭିତରେ ସେ ବାସ୍ତବତା

ଆଣିଛନ୍ତି । ସଦ୍ଭକର୍ମୀ ବନ୍ଧୁ ଭାବରେ ତାଙ୍କର ସାହାଯ୍ୟ ଭୁଲିବାର ନୁହେଁ ।

ଓଡ଼ିଶା ରଙ୍ଗମଞ୍ଚର ଇତିହାସ ଦୁର୍ଲ୍ଲଭ ବାବୁଙ୍କର ରକ୍ତରେ ମିଶି ରହିଛି । ସେ ମୋର ନମସ୍ୟ । ତାଙ୍କର ଅଭିନୟ ବିଷୟରେ ଟିପ୍ପଣି ଦେବା ମୋର ଧୃଷ୍ଟତା ହେବ । ତେବେ ଦେବ ଚରିତ୍ରର ଅନ୍ତରରେ ସେ ଯେ ପହଞ୍ଚି ପାରିଛନ୍ତି, ଏହା ତାଙ୍କ ଅଭିନୟରୁ ସୁସ୍ପଷ୍ଟ ।

ଲକ୍ଷ୍ମୀପ୍ରିୟା (କ) 'ସବିତା' ଭୂମିକାରେ ଦର୍ଶକଙ୍କ ମରମ ତପୁଡ଼ ଯୋଉ ଲୁହର ଧାର ଛୁଟାନ୍ତି, ତାହାହିଁ ତାଙ୍କ ସଫଳ ଅଭିନୟର ପ୍ରଶଂସାପତ୍ର । ବିଭିନ୍ନ ରୂପରେ ଓ ଚରିତ୍ର ଚିତ୍ରଣରେ ସେ ଅଦ୍ୱିତୀୟା ।

ପ୍ରତିହାସି, ବୃନ୍ଦାବନ, ନିତ୍ୟାନନ୍ଦ, ତୁଷାର, ଈଶ୍ୱର, ବନବିହାରୀ, ନିର୍ମଳା, ଲକ୍ଷ୍ମୀପ୍ରିୟା, ରମା ପ୍ରଭୃତି ମୋର ଧନ୍ୟବାଦାର୍ହ ।

କିଶୋରକବିଙ୍କ ରଚନା ଓ ସ୍ୱରଯୋଜନା, ପୂର୍ଣ୍ଣମିଶ୍ରଙ୍କ ସଙ୍ଗୀତ ପରିଚାଳନା, ଗୁରୁ ଗୋପିନାଥଙ୍କ ନୃତ୍ୟପରିଚାଳନା ଓ ବନ୍ଧୁ ବିଚିତ୍ରାନନ୍ଦଙ୍କ ମଞ୍ଚସଜ୍ଜା, ସବୁ ମିଶି ଏହି ନାଟକକୁ ଉପଭୋଗ୍ୟ କରିପାରିଛି । ସମସ୍ତଙ୍କୁ ମୋର ଧନ୍ୟବାଦ ଜଣାଏ ।

ଏଇ ନାଟକର ପ୍ରସ୍ତୁତି ଦ୍ୱାରା ମୋ ମନର ଏକ ରୁଦ୍ଧ ଆବେଗ ପ୍ରକାଶ ପାଇଚି, ସେଇ ମୋର ସାନ୍ତ୍ୱନା । ମୋର ଆନନ୍ଦ ନୂତନ ସୃଷ୍ଟିରେ; ଭାବର ଆଦାନ ପ୍ରଦାନ ଦ୍ୱାରା ସୁସ୍ଥ ସିଦ୍ଧାନ୍ତ ସ୍ଥିରୀକରଣରେ ।

ପୁଣି ଦେଖାହେବ । ବିଦାୟ...

**ବ୍ୟୋମକେଶ**

# ସଂଗଠନକାରୀଗଣ

ସ୍ୱତ୍ୱାଧିକାରୀ—ଶ୍ରୀଯୁକ୍ତ କୃଷ୍ଣମୋହନ ରଥ ।
ସେକ୍ରେଟାରୀ—ଶ୍ରୀଯୁକ୍ତ ବାଉରିବନ୍ଧୁ ମହାନ୍ତି ।
ମ୍ୟାନେଜର—ଶ୍ରୀଯୁକ୍ତ ବାଲୁକେଶ୍ୱର ରଥ ।
ଲେଖକ—ଶ୍ରୀଯୁକ୍ତ ବ୍ୟୋମକେଶ ତ୍ରିପାଠୀ ।
ପରିଚାଳନା—ଶ୍ରୀଯୁକ୍ତ ବ୍ୟୋମକେଶ ତ୍ରିପାଠୀ ।
ସଙ୍ଗୀତ ରଚନା ଓ ସ୍ୱରଯୋଜନା—
କିଶୋର କବି ଶ୍ରୀ ଶ୍ୟାମସୁନ୍ଦର ଦାଶ ।
ସଙ୍ଗୀତ ପରିଚାଳନା—ଶ୍ରୀ ପୂର୍ଣ୍ଣଚନ୍ଦ୍ର ମିଶ୍ର ।
ନୃତ୍ୟ ପରିଚାଳନା—ଶ୍ରୀ ଗୋପୀନାଥ ବେହେରା ।
କ୍ଲାରିଓନେଟ୍—ଶ୍ରୀ ଦୟାନିଧି ତ୍ରିପାଠୀ ।
ସଙ୍ଗତ—ଶ୍ରୀ ବନମାଳୀ ମହାରଣା ।
ଆଲୋକ ପରିଚାଳନା—ରାଜକିଶୋର, ଉଦୟ ।
ସ୍ମାରକ—ଈଶ୍ୱର, ତୁଷାର, ବନବିହାରୀ ।
ମଞ୍ଚଶିଳ୍ପୀ—ବିଶ୍ୱସାନନ୍ଦ ମହାନ୍ତି ।
ମଞ୍ଚ ପରିଚାଳନା—ନିରଞ୍ଜନ, ରାମ, ରତ୍ନାକର ।
ବେଶବିନ୍ୟାସ—ଲିଙ୍ଗରାଜ, ପ୍ରସନ୍ନ, ନାରଣ ।

———

## —ଅଂଶଗ୍ରହଣ କରିଛନ୍ତି—

### ···ପୁରୁଷ···

ଶୁଭ—ବ୍ୟୋମକେଶ
ଦେବ—ଦୁର୍ଲ୍ଲଭ
ଦୁର୍ଗ—ଦୁଃଖିରାମ
ଗଣପତି—ପ୍ରଭଦାସ
ଡାକ୍ତର—ଈଶ୍ୱର
ବେଲୁନ୍—ବୃନ୍ଦାବନ (ବୁଲ୍ ବୁଲ୍)
ଯୋଗେଶ—ନିତ୍ୟାନନ୍ଦ
ପାଗଳଗଣ—ରଘୁନାଥ, ତୁଷାର ଓ ବନବିହାରୀ
ବାଳକଗଣ—ପ୍ରସନ୍ନ, ନାରାୟଣ ଓ ପଦ୍ମ
ସୁବ୍ରତ—ବେବି ମିନା
ଆଭା—ବେବି ରମା

### ···ସ୍ତ୍ରୀ···

ଚନ୍ଦ୍ରିକା (ମଧୁ)—ପୂର୍ଣ୍ଣିମା
ଗୀତା—କୁଞ୍ଜଲତା
ସବିତା—ଲକ୍ଷ୍ମୀ (କ)
ଚମ୍ପା—ନିର୍ମଳା
ମଣି—ଲକ୍ଷ୍ମୀ (ଖ)

### ···ନୃତ୍ୟାଂଶେ···

ସୁମିତ୍ରା*ଚମ୍ପା
ପ୍ରେମ*ରମା
*ପ୍ରସନ୍ନ*
*ରେବତୀ*
*ନାରଣ*



**ନାଟକର ଗୀତାଂଶ ପୁସ୍ତକର ଶେଷଭାଗରେ ଦିଆଯାଇଛି**

# ପ୍ରଥମ ଅଙ୍କ

## ପ୍ରଥମ ଦୃଶ୍ୟ

[ ରାଞ୍ଚୀ ପାଗଳଖାନା । ଗଛ ପାଖରେ ଅଧେ ପାଚେରି ଓ ଟାଇଲ ଘରର ଅଧେ ବାରଣ୍ଡା । ସାମନାରେ କେତୋଟି ଫୁଲଗଛ । ଶେଷରେ ଆକାଶ । ବାରଣ୍ଡା ଉପରେ ଜଣେ ବୃଦ୍ଧ ବହି ପଢ଼ାରେ ମଗ୍ନ । Down Stageର ଡାହାଣ ପାଖରେ ଜଣେ ପଣ୍ଡିତ ବସି ଫୁଲ ଗୁନ୍ଥିବାର ଅଭିନୟ କରୁଛନ୍ତି ଓ ମଝିରେ ମଝିରେ ଗୀତ ଗାଇ ଉଠୁଛନ୍ତି । ସେ ଘଣ୍ଟା ବଜାଇ ଠାକୁର କରୁଚନ୍ତି । ଜଣେ ଛୁଣ୍ଡା-ସୈନିକ-ପୋଷାକଧାରୀ ଲୋକ ଖଣ୍ଡେ ଠେଙ୍ଗା କାନ୍ଧରେ ବନ୍ଧୁକ ପରି ପକାଇ ଏ ପାଖରୁ ସେପାଖ ପ୍ୟାରେଡ୍ କରୁଚି । ସମୟ—ସକାଳ । ]

ପଣ୍ଡିତ— କେଶବ ଧୃତ କଲ୍କି ଶରୀର
ଜୟ ଜୟ ଦେବ ହରେ !

ସୈନିକ—**Fire** ! ଢୋ-ଢୋ-ଢୋ ।

ରାଜମାର୍ତ୍ତଣ୍ଡ—(ହସି) ହାଃ ହାଃ ହାଃ – ପୁଞ୍ଜିପତିର ଧ୍ୱଂସ ଅସମ୍ଭବ । ଯୁଗେ ଯୁଗେ, କାଳେ କାଳେ, ଦଳର ଅଧିପତି ସର୍ବଶକ୍ତିମାନ୍

ହୋଇ ରହିଚନ୍ତି । ପ୍ରସ୍ତର ଯୁଗରେ ଆଦିମ ମାନବଙ୍କ ଦଳପତି କାଳର ରାଜା ମହାରାଜା ଜମିଦାରରେ ପରିଣତ ହେଲେ । ସେମାନେ ଗଲେ, ଶିଳ୍ପପତି ହେଲେ ପୁଞ୍ଜିପତି । ପୁଞ୍ଜିପତିଙ୍କୁ ଧ୍ୱଂସକରି ତୁମେ ଗଢ଼ିବ ମାର୍କସ୍‌ବାଦର ଦେଶ ? ମାତ୍ର ତୁମର କ'ଣ ଦଳପତି ରହିବେ ନାହିଁ ? ତୁମର ଦଳପତି କ'ଣ ସର୍ବଶକ୍ତିମାନ୍ ଏକଛତ୍ର ଶାସକ ହେବେ ନାହିଁ ? ମଣିଷର ସ୍ୱାଧୀନତାକୁ ପାର୍ଟିର ସ୍ୱାର୍ଥ ନିକଟରେ ବଳି ଦେବାକୁ ପଡ଼ିବ ନାଇଁ ? ତେବେ ସ୍ୱାଧୀନତା କାହିଁ ? ବ୍ୟକ୍ତିତ୍ୱର ବିକାଶ କାହିଁ ? ପାଗଳ—ତୁମେ ସମସ୍ତେ ପାଗଳ । ମୂଳଦୁଆ କିଛି ନାହିଁ । ପୃଥିବୀଟା ଗୋଲ ।

ପଣ୍ଡିତ—କେଶବ ଧୃତ କଲ୍‌କି ଶରୀର ଜୟ ଜୟ ଦେବ ହରେ !

ସୈନିକ—**Fire** ! ଢୋ, ଢୋ, ଢୋ । (ଉଠିପଡ଼ି ହସି ହସି)

କଦମ୍ କଦମ୍ ବଢ଼ାଏ ଯା
ଖୁସିକେ ଗୀତ ଗାଏ ଯା,
ଜୀନ୍ଦଗୀ ହୈ କୌମ୍ କା
କୌମ୍ ପର୍ ମିଟାଏ ଯା ।

(ରାଡ଼ୀ, ଡାକ୍ତର, ଦେବ ପ୍ରବେଶକଲେ)

ରାଜମାତଙ୍କ—**Attention ! Silence** ! ଧ୍ୱଂସ, ହିଂସା, ରକ୍ତପାତରେ ସମାଧାନ ଅସମ୍ଭବ । କଦମ୍ କଦମ୍ ବଢ଼ାଇ ତୁମେ ନେତାଜୀଙ୍କ ବୈପ୍ଳବିକ ମତର ପ୍ରଚାର କରୁଚ ? ଜୟ ଜୟ ଦେବ କହି ତୁମେ ହିନ୍ଦୁ ମହାସଭାର ନେତା ବୋଲାଉଛ ? ହେଲେ ଧନ ! ତୁମ ସମସ୍ତଙ୍କ ବୋପା ପଣ୍ଡିତ ନେହରୁ

ଷ୍ଟୁଟନକ୍ ମେଲ୍ ଯୋଗେ ଏଇ ବାର୍ତ୍ତା ମୋ ପାଖକୁ ପଠାଇ-ଛନ୍ତି । ତାଙ୍କର ଆଦେଶ ମୁତାବକ ମୁଁ ନୂଆ **Constitution** ପ୍ରସ୍ତୁତ କରିଛି । ଆଜିଠାରୁ ଆମ ଦେଶରେ ଏଇ ନିୟମ ସବୁ ଚାଲିବ । ଶୁଣନ୍ତୁ—**Friends and Romans ! Lend me thy ears.**

ପଣ୍ଡିତ—ବୈକୁଣ୍ଠେ ଚ ପ୍ରୟାଗେ ଚ, ତଥା ବଦରିକା ଶ୍ରମେ
ଯତ୍ଫଳଂ ଲଭ୍ୟତେ ବିପ୍ର, ସ୍ତ୍ରୀ ସନ୍ନିଧାନେ ପଦଂ ॥
କାର୍ତ୍ତିକେହଂ କରିଷ୍ୟାମି, ପ୍ରାତଃ ସ୍ନାନଃ ଜନାର୍ଦ୍ଦନ ।
ତବ ପ୍ରସାଦାତ୍ ପାପଂ ମେ, ଦାମୋଦର ବିନଶ୍ୟତୁ ॥

ସୈନିକ—(ବିଗୁଲ ବଜାଇବା ଅଭିନୟ) ତୁଟୁ, ତୁଟୁ, ତୁଟୁ···

ଡାକ୍ତର—ପାଗଳ ଗାରଦର ଏଇ **Section**ଟା ନିରାପଦ ରୋଗୀଙ୍କ ପାଇଁ ରହିଛି । ଏମାନେ ସବୁ କାହାରି କିଛି ଅନିଷ୍ଟ କରନ୍ତି ନାହିଁ । ନିଜ ନିଜ ଖିଆଲରେ ବୁଡ଼ି ରହନ୍ତି । ସ୍କିଜୋ-ଫ୍ରେନିଆ, ହେବେ-ଫ୍ରେନିଆ, କାଟାଟୋନିଆ ପ୍ରଭୃତି ରୋଗୀ ଏଠି ରହନ୍ତି । ଏପିଲେପ୍ସି ଓ ଗ୍ରାଣ୍ଡମାଲ୍ ରୋଗୀଙ୍କୁ ତ ଦେଖି ଆସିଲେ ।

ସୀତା—ଚାଲ ଏଠୁ ଶୀଘ୍ର ଚାଲିଯିବା ବାବା; ଏମାନଙ୍କୁ ଦେଖି ମୋ ଦେହ କେମିତି ଶିହରି ଉଠୁଛି !

ରାଜମାତଣ୍ଡ—ପଚ୍ଚୋଇ ବିଭାଗ ୨୩ ଦଫା ଆଇନର ଖ—ବିଭାଗ ଅନୁଯାୟୀ ସର୍ବସାଧାରଣଙ୍କୁ ଜଣାଇ ଦିଆ ଯାଉଛି ଯେ, ଯୋଉ ସ୍ତ୍ରୀ ମାନେ ତିନୋଟିରୁ ଅଧିକ ସନ୍ତାନଙ୍କୁ ଜନ୍ମ ଦେବେ, ସେମାନଙ୍କୁ ଲଣ୍ଡା କରି ଦିଆଯିବ ଓ ସେମାନେ ବିଧବାଙ୍କ ପରି ଜୀବନ ଯାପନ କରିବେ । ଆଉ ସେହି ପରିବାରର ଗୃହକର୍ତ୍ତାଙ୍କୁ ବାଧ୍ୟତାମୂଳକ ଭାବରେ ବାବାଜି ହୋଇ ମାନସରୋବର ଯାତ୍ରା କରିବାକୁ ହେବ । ଦେଶର ଉନ୍ନତିକଳ୍ପେ

ଜନ୍ମ ନିରୋଧ ପାଇଁ, ଏଇ ନିୟମ ଆଜଠାରୁ ପ୍ରଚଳନ କରାଗଲା ।

ସୈନିକ—(ଶୋଇପଡ଼ି) **Fire** ! ଢୋ, ଢୋ, ଢୋ—

ସୀତା—ଉଃ !

ଡାକ୍ତର—ଡରିଲୁ ନାଁ କ'ଣ ସୀତା ? ଆରେ ନାଁ-ନାଁ, ସେ କିଛି ନୁହେଁ । ନେତାଜୀ ସୁବାସ୍ ବୋଷଙ୍କ ଆଜାଦ୍ ହିନ୍ଦ୍ ଫୌଜର ଏ ଜଣେ ସୈନିକ । ଯୁଦ୍ଧ ପଡ଼ିଆରେ ଯାର ମୁଣ୍ଡ ଖରାପ ହୋଇଗଲା । ସେଇ ଦିନଠୁ ସେ ଏଇଠି ଅଛି ।

ପଣ୍ଡିତ—ହଇହେ ! ତୁମକୁ ଗ୍ରହ ଗୋଡ଼େଇଚି ? ହଉ; ସବୁଦିନ ସକାଳୁ ଗାଧୋଇ ସାରି ଏଇ ଶ୍ଳୋକଟି ସାତଥର ଗାଇବ । ସବୁ ଗ୍ରହ ଦୋଷ ଛିଟିଯିବ, ବୁଝିଲ ?

ଦେବତାନାଂ ମୃଷୀଣା ଚ ଗୁରୁଂ କନକ ସନ୍ନିଭଂ,
ଜଗଦ୍ବନ୍ଦ୍ୟଂ ତ୍ରିଲୋକେଶଂ, ପ୍ରଣମାମି ବୃହସ୍ପତିଂ ॥

ସୀତା—ବାବା, ଏ ପଣ୍ଡିତ କ'ଣ ପାଗଳ ହୋଇ ଯାଇଚନ୍ତି ?

ଡାକ୍ତର—ହଁ ମା ! କେତେ ଯେ ଶାସ୍ତ୍ର ପୁରାଣ, ବେଦ ବେଦାନ୍ତ ତାଙ୍କର ମୁଖସ୍ଥ ଅଛି ତାହାର ସୀମା ନାହିଁ । ମାତ୍ର ତାଙ୍କ ଅବସ୍ଥା ତ ଆଜ ଆଖିରେ ଦେଖୁଚୁ ।

ରାଜମାତଙ୍ଗ—(ପାଖକୁ ଆସି) ଆପଣମାନେ ଦକ୍ଷିଣ ପନ୍ଥୀ ନାଁ ବାମ ପନ୍ଥୀ ? ଓ (କ'ଣ ଲେଖି ନେଲା); ପ୍ରଧାନ ସଭାର ବୈଠକ ଦେଖିବାକୁ ହେଲେ ମୋର ଅନୁମତି ଦରକାର; ଏ କଥା ଜାଣନ୍ତି ? ଆଚ୍ଛା ହଉ, ନିଅନ୍ତୁ ଆପଣଙ୍କ **Admission Card** ।

(ଖବରକାଗଜ ଚିରି ଖଣ୍ଡେ ଖଣ୍ଡେ ତିନିଜଣଙ୍କ ହାତକୁ ଦେଲା । ହଠାତ୍ ଆର୍ତ୍ତ ଚିତ୍କାର ଭାସି ଆସିଲା । ପାଗଳ ତିନିଜଣ ଆତ୍ମଗୋପନ କଲେ ଭୟରେ )

ଦେବେନ୍ଦ୍ର—ଏ ଚିତ୍କାର କାହିଁକି, ଡାକ୍ତର ବାବୁ ?

ଡାକ୍ତର—ବୋଧହୁଏ **Shock-treatment** ହଉଛି ।

ଦେବେନ୍ଦ୍ର—**Shock-treatment ?**

ଡାକ୍ତର—ହଁ, ପାଗଳକୁ ପୁଣି ସ୍ୱାଭାବିକ ଅବସ୍ଥାକୁ ଫେରେଇ ଆଣିବା ପାଇଁ ଅନେକ ସମୟରେ ତା ମୁଣ୍ଡରେ **Electric Shock** ଦେବାକୁ ହୁଏ । ତାହାଦ୍ୱାରା ପାଗଳର ବିକ୍ଷିପ୍ତ ଚିନ୍ତାଧାରାକୁ ପୁଣି ସଜଡ଼ କରିବା ସମ୍ଭବ ହୁଏ ।

ସୀତା—ମାଗୋ ଏ ବିକଳ ଚିତ୍କାର ! ଖୁବ୍ କଷ୍ଟ ହେଉଥିବ ବୋଧ ହୁଏ ।

ଡାକ୍ତର—କଷ୍ଟ ତ ସହିବାକୁହିଁ ହେବ । ନ ହେଲେ ପାଗଳ କ'ଣ ସ୍ୱାଭାବିକ ଅବସ୍ଥାକୁ ଫେରି ଆସିପାରେ ?

ଦେବେନ୍ଦ୍ର—ମାନେ ? ଆପଣ କ'ଣ କହିବାକୁ ଚାହାଁନ୍ତି, ମୋର ଶୁଭ ମଧ୍ୟ ଏମିତି କଷ୍ଟ ପାଇ ବିକଳ ଚିତ୍କାର କରିବ ? ଏମିତି ଏଇ ପାଚେରୀଘେରା ପ୍ରେତପୁରୀ ଭିତରେ ତା'ର ସାରା ଜୀବନ ବିତେଇ ଦବ ? (କଣ୍ଠ ରୁଦ୍ଧ ହୋଇ ଆସିଲା)

ଡାକ୍ତର—ଦେବ ! ଏତେ ଅଧୀର ହେଲେ ରୋଗୀର ଚିକିତ୍ସା କରି ହୁଏନା । ମୁଁ କେବଳ ଡାକ୍ତର ନୁହେଁ । ତୁମ ସ୍ୱର୍ଗତ ମାଲିକଙ୍କର ଅନ୍ତରଙ୍ଗ ବନ୍ଧୁ । ଶୁଭକୁ ମୁଁ ମଧ୍ୟ ସ୍ନେହ କରେ, ମୁଁ ମଧ୍ୟ ଚାହେଁ ଶୁଭ ସ୍ୱାଭାବିକ ଅବସ୍ଥାକୁ ଫେରିଆସୁ, ମୋର ସୀତାକୁ ବିବାହ କରି ସୁଖରେ ଦିନ କାଟୁ ।

ଦେବେନ୍ଦ୍ର—ମୁଁ ଜାଣେ, ମୁଁ ଜାଣେ ଡାକ୍ତର ବାବୁ ! ଆପଣ ଶୁଭର ଭଲ ଲାଗି ମତେ କାଟେଇଁ ଏଇ ପାଗଳା ଗାରଦକୁ ନେଇ ଆସିଚନ୍ତି । ମାତ୍ର ଡାକ୍ତର ବାବୁ, ଏଠି ଏଇ ପ୍ରେତପୁରୀର ବନ୍ଧିଶାଳା ଭିତରେ ମୁଁ ଶୁଭକୁ କେମିତି ଛାଡ଼ିପିବ, କହନ୍ତୁ ?

ଡାକ୍ତର—କିନ୍ତୁ ରୋଗୀର ଚିକିତ୍ସା କରିବାକୁ ହେବ ।

ଦେବେନ୍ଦ୍ର—ଡାକ୍ତର ବାବୁ, ଆପଣ କେବଳ ଚିକିତ୍ସକର ମନ ନେଇ ଏ କଥା କହୁଚନ୍ତି । ମାତ୍ର ମୋର ଛାତି ଭିତରେ ଯେ ଗୋଟାଏ ବାପର ସ୍ନେହ ଭରି ରହିଛି । ମୋର ମାଲିକଙ୍କର ଗୋଟିଏ ବୋଲି ପୁଅ ଶୁଭ; ଏତେବେଳକୁ ତା'ର **M. A.** ପରୀକ୍ଷା ଶେଷ ହୋଇଯାଇଥାନ୍ତା—ତାକୁ ମୁଁ କେମିତି ଏଠି ଏତେ ଯନ୍ତ୍ରଣା ଭୋଗ କରିବାକୁ ଛାଡ଼ିଯିବି, କହିଲେ ? ନା, ନା ଡାକ୍ତର ବାବୁ ! ବରଂ ସେ ତା'ର ଘରେ, ତା ମା'ଙ୍କ ଆଖି ଆଗରେ ଥାଉ । ସେଥିରେ ମୁଁ ଶାନ୍ତି ପାଇବି ।

ସୀତା—ଥାଉ ବାବା ! ମଉସା ଯେତେବେଳେ ତାଙ୍କୁ ଛାଡ଼ିବାକୁ ନାରାଜ, ଆଉ ଜୋର କରି ଲାଭ କ'ଣ ? ବଳ ପ୍ରୟୋଗ କରି କ'ଣ କାହାରି ଚିକିତ୍ସା କରିହୁଏ ?

ଦେବେନ୍ଦ୍ର—ଡାକ୍ତର ବାବୁ ! ଅନ୍ୟ ଉପାୟ କ'ଣ କିଛି ନାହିଁ ? ଶୁଭକୁ ଘରେ ରଖି ଭଲ କରିବା କ'ଣ ସମ୍ଭବ ହେବ ନି ? ଆପଣ ଯାହା କହିବେ ମୁଁ କରିବି, ମାତ୍ର ଏଠି ଛାଡ଼ି ଯିବାକୁ କହନ୍ତୁ ନାହିଁ ।

ସୀତା—ହଁ ବାବା ! ତାଙ୍କୁ ଭଲ କରିବାର ଅନ୍ୟ ଉପାୟ କ'ଣ କିଛି ନାହିଁ ? ପାଗଳ ଗାରଦକୁ ନ ଆଣି କଣ ତାଙ୍କୁ ଆରୋଗ୍ୟ କରି ହେବନି ?

ଡାକ୍ତର—ହଁ, ହେବନି କାହିଁକି ? ଯଦି ତାର ବାହାଘର—

ଦେବେନ୍ଦ୍ର—ବାହାଘର ?

ଡାକ୍ତର—ହଁ; ଶୁଭକୁ ଯଦି ବିବାହ କରି ଦିଆ ଯାଆନ୍ତା, ତେବେ ସ୍ତ୍ରୀ-ସଙ୍ଗ ସୁଖ ହେତୁ ହୁଏତ ତା'ର ଚିନ୍ତାଧାରା କିଛିଟା ସଙ୍କୁଚିତ ହୋଇ ପାରନ୍ତା ।

ଦେବେନ୍ଦ୍ର—ଏହା କଣ ସମ୍ଭବ ଡାକ୍ତର ବାବୁ ?

ଡାକ୍ତର—ହଁ, ଅନେକ କେଶ୍‌ରେ ଦେଖା ଯାଇଛି ସ୍ତ୍ରୀ ସାଙ୍ଗ-ସୁଖ ପାଇଲେ କାମାତୁର ହୋଇ ପାଗଳର ଅବସ୍ଥା ଅନେକାଂଶରେ ଭଲ ହୋଇଯାଏ । ସ୍ତ୍ରୀର ଆକର୍ଷଣ କମ୍ ନୁହେଁ, ଦେବ ! ପାଗଳର ବିକ୍ଷିପ୍ତ ଚିନ୍ତାଧାରକୁ କେନ୍ଦ୍ରୀଭୂତ କରିବାପାଇଁ ସୁନ୍ଦରୀ ଯୁବତୀର ମୋହ ଲୁହାକୁ ଚୁମ୍ବକ ଟାଣିଲା ପରି କାମ କରେ । Occupational Therapy ଅନୁସାରେ ପାଗଳକୁ କୌଣସି କାମରେ ଲଗାଇ ରଖିଲେ, ତାର ଚିନ୍ତା-ଧାର ସଞ୍ଚିତ ହେବା ସମ୍ଭବ । ତେଣୁ ଗୋଟାଏ ସ୍ତ୍ରୀ ଠାରେ—

ଦେବେନ୍ଦ୍ର—ସ୍ତ୍ରୀ ! ଶୁଭକୁ ବିବାହ ଦେବାକୁ ହେବ ? କିନ୍ତୁ ସୀତା-ମା'ଙ୍କ ସହିତ ତା ବିବାହ ଯେ ସ୍ଥିର ହୋଇ ସାରିଛି ଅନେକ ଦିନରୁ ! ସୀତା ମା' କ'ଣ ରାଜି ହେବେ—

ଡାକ୍ତର—ତା' କଣ ଆଉ ସମ୍ଭବ ହୋଇପାରେ ? ମୁଁ ଜାଣିଶୁଣି ସୀତାକୁ କେମିତି ଜଣେ ପାଗଳ ହାତରେ ଦେଇଦେବି, କହିଲ ? କୌଣସି ବାପ କ'ଣ ତାର ଝିଅର ମୃତ୍ୟୁ ବା ବୈଧବ୍ୟ କାମନା କରିପାରେ ?

ଦେବେନ୍ଦ୍ର—ମା ସୀତା, ତୁମେ ଶୁଭକୁ ଏତେ ଭଲ ପାଉଥିଲ; ତୁମେ ତାର ବାଗ୍‌ଦତ୍ତା । ତାକୁ ଆରୋଗ୍ୟ କରିବାକୁ ତୁମେ କ'ଣ—

ସୀତା—ଆପଣ ମଧ୍ୟ କ'ଣ ପାଗଳ ହେଲେ ମଉସା ? ଶୁଭ ତ ମତେ ଦେଖିଲେ ମାରି ଗୋଡ଼ଉଛି । ଆପଣ କ'ଣ ନିଜେ ଦେଖି ନାହାନ୍ତି ? ପ୍ରଥମ କରି ଯେତେବେଳେ ତା' ମୁଣ୍ଡ ଖରାପ ହୋଇଗଲା, ମୁଁ କ'ଣ କମ୍ ଚେଷ୍ଟା କରିଛି ? ମାତ୍ର ମୋ ଲୁଗା ଚିରି, ବେଣୀ ଭିଡ଼ି, ମତେ ସେ କି ଦୁର୍ଦ୍ଦଶା ନକଲେ ?

ଏ ଅବସ୍ଥାରେ ମୁଁ ଯଦି ତା ପାଖରେ ରହେ, ତେବେ ମୋର ଉଣ୍ଡି ଶପି ମାରି ଦବାକୁ ତାକୁ କେତେବେଳ ଲାଗିବ ?

ଦେବେନ୍ଦ୍ର—ହଁ, ହଁ, ସତକଥା । ତେବେ ଉପାୟ ? ଗୋଟାଏ ପାଗଳକୁ କିଏ ତା'ର ଝିଅ ଦବ ? ଶୁଭର ବିବାହ ହବ କେମିତି ?

ରାଜମାନ୍ତଙ୍କ—୧୦୩ ଧାରାର 'ଚ' ଦଫା ଅନୁସାରେ ପ୍ରତ୍ୟେକ ଭାରତବାସୀ ଗୁଣେଗୋଟି ସ୍ତ୍ରୀ ଆଇନତଃ ବିବାହ କରି ପାରିବେ । ଗୋଟିଏ ସ୍ତ୍ରୀ ବାଲ୍ୟ ଅବସ୍ଥାରେ, ସାଙ୍ଗ ହୋଇ ପାଠ ପଢ଼ିବା ପାଇଁ; ଦୁଇଟି ସ୍ତ୍ରୀ ଯୌବନାବସ୍ଥାରେ, ନିହାତି ଦରକାର ବୋଲି ଓ ଚତୁର୍ଥ ସ୍ତ୍ରୀଟି ବୃଦ୍ଧା ବସ୍ଥା—ମାନେ ବୃଦ୍ଧାବସ୍ଥାରେ, ସେବା ଶୁଶ୍ରୂଷା ପାଇଁ ।

ପଣ୍ଡିତ—ଯଥା ରାବଣସ୍ୟ ମନ୍ଦୋଦରୀ—ଯଥା ରାମସ୍ୟ ସୀତା—

ସୈନିକ—ଲୁରୁ···ଲୁରୁ···ଲୁରୁ···

ଦେବେନ୍ଦ୍ର—ଚାଲନ୍ତୁ, ଡାକ୍ତର ବାବୁ ! ଏ ପାଗଳଖାନାରୁ ମତେ ନେଇ ଚାଲନ୍ତୁ । ଗୋଟାଏ ମୁହୂର୍ତ୍ତ ମଧ୍ୟ ମୁଁ ଏଠି ରହିବାକୁ ଚାହେଁନା—

( ଦେବ, ରାଜା, ଡାକ୍ତର ପ୍ରସ୍ଥାନ )

ରାଜମାନ୍ତଙ୍କ—ମୂଳଦୁଆ କିଛି ନାହିଁ, ପୃଥିବୀଟା ଗୋଲ ! ଏ ଦୁନିଆଁ ଏକ ପାଗଳଖାନା । The whole world is a mad-house—ହାଃ···ହାଃ···ହାଃ···ହାଃ···

ଅନ୍ଧାର

—୦—

## ଦ୍ୱିତୀୟ ଦୃଶ୍ୟ

**[କୋଠା ଘର । ଦିନ । ଦେବେନ୍ଦ୍ର ଓ ସବିତା କଥାବାର୍ତ୍ତା ହେଉଥିବେ । ସବିତା ଶୁଭେନ୍ଦ୍ରର ବୋଉ, ବାପା ।]**

ସବିତା—ନା, ନା ଦେବ ! ମୁଁ ତାକୁ ସେଠି ଛାଡ଼ିଦେଇ ପାରିବି ନାହିଁ । ତୁମେ ଯୋଉ ନର୍କପୁରୀର ବର୍ଣ୍ଣନା କରିଗଲଣି···

ଦେବ—କିନ୍ତୁ ଆଉ ଯେ କିଛି ଉପାୟ ନାହିଁ ମା ! ପାଗଳ ପୁଅକୁ ପାଗଳାଖାନାକୁ ପଠାଇ ଚିକିତ୍ସା ନକଲେ ସେ କଣ ଭଲ ହେବ?

ସବିତା—ନା, ନା ଦେବ ! ଶୁଭକୁ ମୁଁ ପାଖରୁ ଛାଡ଼ି ପାରିବିନି । ମୋର ଗୋଟିଏ ବୋଲି ପୁଅ । କେତେ ଆଶା ନେଇ ମୁଁ ତାକୁ **M. A.** ପଢ଼ଉଥିଲି—

ଦେବ—ମା ! ମୋ ପ୍ରାଣରେ କଣ କମ୍ କଷ୍ଟ ହେଉଛି ? ଶୁଭକୁ ମୁଁ ଆପଣା ସାନ ଭାଇ ପରି ମଣିଷ କରିଛି; ତାକୁ ପାଠ ପଢ଼େଇଛି, ଖେଳ ଶିଖେଇଛି; କେତେ ଆଶା କରିଛି, ଶୁଭ **M.A.** ପାଶ କରିବ, **I. A. S.** ପାଶ୍ କରିବ, ହାକିମ ହେବ ! କେତେ ମନ ଦେଇ ପଢ଼ୁଥିଲ—

ସବିତା—ହେଲେ ସେଇ ପଢ଼ା ଯେ ତା'ର କାଳ ହବ ଏ କଥା କିଏ ଜାଣିଥିଲା ? ଗଦା ଗଦା ବହି ଭିତରେ ଦିନଦିନ ରାତିରାତି ବସିଥିବ; କେତେ କହି କହି, "ଆରେ ଏତେ ପଢ଼ନା, ମଝିରେ ମଝିରେ ଟିକିଏ ବୁଲି ଆ, ସିନେମା ଦେଖିଆ;" ନହେଲେ ତା'ର ସେଇ ଗୋଟିଏ କଥା—"ବୋଉ; ଫାଷ୍ଟ କ୍ଲାସ୍ ଫାଷ୍ଟ୍ ନ ହେଇ ପାରିଲେ ଲାଜରେ ମୁଁ ମୁହଁ ଟେକି ପାରିବିନା ।

ଦେବେନ୍ଦ୍ର—ଆଜ ଫାଷ୍ଟ୍ କ୍ଲାସ୍ ଫାଷ୍ଟ୍ ! ମୁଣ୍ଡକୁ ବଗାଡ଼ ଦେଇ ବସିଲ ଯେ, ଶେଷକୁ ପରୀକ୍ଷା ବ ଦେଇ ପାରିଲନ । ଛାଡ଼ନ୍ତୁ ସେ କଥା; ପଛ କଥାକୁ ଘୋଷି ହେଲେ ଫଳ କଛି ନାହିଁ ! ବରଂ ତାକୁ ଭଲ କରିବାକୁ କ'ଣ କରିବା ସେଇ କଥା ଠିକ୍ କରନ୍ତୁ ।

ସବିତା—କ'ଣ ଆଉ ଠିକ୍ କରିବ ଦେବ ? ତୁମେ ଅଉ ଯାହା କହୁଚ କୁହ; ହେଲେ ଶୁଭକୁ ମୋ ଆଖି ଆଗରୁ ଅନ୍ୟ କୁଆଡ଼େ ପଠେଇ ଦବା କଥା କୁହନ ।

ଦେବେନ୍ଦ୍ର—କନ୍ତୁ ତା'ର ଚକିତ୍ସା ହବ କମିତ ? ସେ ଭଲ ହବ କମିତ ?

( ଭିତରୁ ବିକଟ ଗର୍ଜନ ଓ ନାରୀ କଣ୍ଠର ଆର୍ତ୍ତନାଦ ! —ସବିତା ଓ ଦେବ ଭିତରକୁ ଗଲେ— )

ସବିତା—ହେଇଟି ପୁଣି କ'ଣ ପାଲ ଆରମ୍ଭ କଲେଣି !

(ମଣି ଓ ଶୁଭ ଆସିଲେ)

ମଣି—ମା'ଲୋ ! ମତେ ଖାଇ ଗଲ ଲୋ—ଇଇ ମତେ ମାରି ପକେଇଲ ଲୋ, ମତେ ମାରି ପକେଇଲ···

(ସବିତା ପଛ ପଟେ ଲୁଚିଲା)

ସବିତା—କରେ ଶୁଭ, ଏ ସବୁ କ'ଣ ହଉଚ ?

ଶୁଭ—(ସିଂହ ପରି) ସିଂହ ! ବଣର ରଜା, ପରାକ୍ରମୀ, ଅସୀମ ସାହସୀ—ମା' ଦୁର୍ଗାଙ୍କ ବାହନ ସିଂହ···

(ସବିତା ପାଦ ତଳେ ବସିଲ)

ମଣି—ମୁଁ ଦୁଧ ନେଇ ତାଙ୍କୁ ଯାଚିବାରୁ ମତେ କହିଲେ, ମୋର ରକ୍ତ ଦରକାର, ମାଂସ ଦରକାର, ନ ହେଲେ ମୋର ବଳ ହବ କେମିତି ? ତା' ପରେ ତାଙ୍କୁ ମୁଁ ବଳେଇବାରୁ, ଗରମ ଦୁଧ

ଚକ ମୋ'ର ଉପରେ ଡାଳ ଦେଇ ଗର୍ଜନ କରି ମିଶି-
ଆସିଲେ ।

ଶୁଭ—ହିଁ ହିଁ, ମୋର ରକ୍ତ ଦରକାର ! କଞ୍ଚା ରକ୍ତ ମାଂସ ବିନା
ସିଂହ ବଂଚ ପାରେନା । ମୋର ରକ୍ତ ଦରକାର, ମହିଷାସୁରର
ଉଷ୍ଣ ରକ୍ତ ଦରକାର । (ଦେବକୁ ଗୁହିଁ କଭ ଗୁଟିଲା)

ଦେବ—ଶୁଭ ! ଚୁପ୍ ହୋଇ ଉପରକୁ ଗୁଲଯା, କହୁଚ । ବେଶି
ଫାଜିଲମି କରିବୁ ତ ମାର ମାର ପିଠିରୁ ଚ୍ଛଲ ଉତାରି ଦେବ ।
ଯା, ଚୁପ୍ ହୋଇ ଗୁଲଯା' ।

ଶୁଭ—ମା, ଜଗତ୍‌ଜନନୀ ! ମହିଷାସୁରର ରକ୍ତପାନ କରିବାକୁ
ଆଦେଶ ଦିଅ ମା ! ମୋର ସନ୍ତପ୍ତ ପ୍ରାଣକୁ ଶୀତଳ କର ।

ସବିତା—ଶୁଭ । ତୁ ଯଦି ଏମିତି ହବୁ, ମୁଁ କାହା ମୁହଁକୁ ଗୁହିଁ
ବଂଚ ରହିବ ? ଯା, ଓପର ମହଲରେ ତୋ ଘରକୁ ଯା' ଭାଇ ।
(ଆଉଁସି ଦେଲେ)

ଶୁଭ—ହାଃ ହାଃ, ମାର ଆଶୀର୍ବାଦ ପାଇଚ ! ଆଉ ଭୟ ନାହିଁ ମା !
ଏଇ ମୁହୂର୍ତ୍ତରେ ମହିଷାସୁରକୁ କ୍ଷତବିକ୍ଷତ କରି···

[ଉଠିପଡ଼ି ଦେବଙ୍କୁ ଆକ୍ରମଣ କଲା । ଦେବ ମାରିଲେ ।
ଶୁଭର ଉନ୍ମାଦ କମିଗଲା]

ଶୁଭ—ବ୍ରୁଟ୍‌ସ ! ୟୁ ଟୁ ?

ଦେବ—ଚୁପ୍ ହୋଇ ଗୁଲଯା' କହୁଚୁ ।

ଶୁଭ—**Yes, Ringmaster, I am sorry** ! ମୁଁ ମୋର
ଯନ୍ତାକୁ ଗୁଲଯିବ । ମାତ୍ର କେତେ ଦିନ, କେତେ ଦିନ ମୁକ୍ତି-
କାମୀ ଶକ୍ତିଶାଳୀ ଶତ୍ରୁକୁ ବନ୍ଦୀକରି ରଖିବ ?

ଦେବ—ଶୁଭ !

ଶୁଭ—**Yes, Ringmaster** ! ମୁଁ ଆଦେଶ ପାଳନ କରିବି । **Yes, yours most obedient servant,** ବଳରାଜ ସିଂହ । (ପ୍ରସ୍ଥାନ)

ସବିତା—ମଣି ! ଗଲୁ, ଆଉ କପେ ଚା' ସଜାଡ଼ି ଆଣିବୁ । ପିଲାଟା ସକାଳୁ କିଛି ଖାଇ ନାହିଁ···

ମଣି—ଓହୋ···ପିଲାଟା ! କେଉଁଦିନ ମୋ ପ୍ରାଣ ନେଇଯିବ ଏ ଶୁଭ ଭାଇ । କେତେଟା ଦିନ ଟିକିଏ ଥଣ୍ଡା ରହୁଛି ତ, କେତେ ଦିନ ଲଗେଇ ଦଉଛି ମହାଭାରତ ସୁଆଙ୍ଗ ! ମୁଁ ଆଉ ତା ପାଇଁ ମାଉଁଚିନ ।

ସବିତା—ହଉ ହଉ, ତୁ ଗଲୁ ; ସକାଳ ଦଶଟା ବାଜିଲାଣି, ତା ପେଟକୁ ଏ ଯାଏ ଆହାର ଟିକିଏ ଗଲାନି । ଯା, ଟିକିଏ ଜଳଖିଆ ଚା' ନେଇଆ । ମୁଁ ଯାଇ ଖୁଆଇ ଦେଇ ଆସିବି ।

ମଣି—ମା ! ତୁମେ ପରା ଗାଧୋଇସାରି ପୂଜା କରିବାକୁ ଯାଉଥିଲ ?

ସବିତା—ଆଉ କି ଗାଧୁଆ, କି ପୂଜା ? ଶୁଭ ଦେବ ତୁଛ ପଡ଼ିଗଲେ । ଯା' ତୁ ଜଳଖିଆ ନେଇଆ; ମୁଁ ଖୁଆଇ ଦେଇ ଗାଧୋଇ ଯିବି ।

ମଣି—ଏମିତି ସ୍ନେହ କରି ତୁମେ ତା'ର ପାଗଳାମି ଆହୁରି ବଢ଼େଇ ଦେଇଚ । ଦେବଦା'ଙ୍କ ପରି ମାଡ଼ ବସଉଥିଲେ ତା ପାଗଳାମି କେବେଠୁଁ ଛାଡ଼ି ଯାଆନ୍ତାଣି, ବୁଝିଲ ? (ପ୍ରସ୍ଥାନ)

ଦେବ—ମତେ ମାଫ୍ କରିଦିବ ମା ! ଆପଣଙ୍କ ଆଗରେ ଶୁଭକୁ ମାରିଲି···

ସବିତା—ନା, ନା ଦେବ ! ସେ କଥା ମୁଁ ମନରେ ଧରିନି । ନହେଲେ ଏମିତି କେତେ ଦିନ ଚାଲିବ ? ଶୁଭର ଏ ଦଶା

ଆଖିରେ ଦେଖି କେତେଦିନ ମୁଁ ଧୈର୍ଯ୍ୟଧରି ରହିବି, କହିଲ ?

ଦେବ—ସେଇଥି ଲାଗିତ ମୁଁ କହୁଥିଲି, ତାକୁ କାଙ୍କେ ଡାକ୍ତରଖାନା ପଠେଇଦବା...

ସବିତା—ନା ଦେବ, ସେ ପାଗଳଖାନାକୁ ମୁଁ ତାକୁ ଛାଡ଼ି ପାରିବି ନାହିଁ । ମୋର ପାଖରେ, ମୋର ଆଖି ଆଗରେ ରଖି ତୁମେ ଯାହା ଚିକିତ୍ସା କରୁଚ କର । ହେଲେ ତାକୁ ମୋ ଆଖିର ଆଡ଼ୁଆଳକୁ ନଅନ ।

ଦେବ—ଡାକ୍ତର ବାବୁ କହୁଥିଲେ, ଆଉ ଗୋଟାଏ ଉପାୟ ଅଛି ।

ସବିତା—କି ଉପାୟ ଦେବ ?

ଦେବ—ଶୁଭକୁ ବାହା ଦେଇ ଦେଲେ ହୁଏତ ତା'ର ପାଗଳାମି ଭଲ ହୋଇଯାଇ ପାରେ ।

ସବିତା—କିନ୍ତୁ ସୀତା ତ ପରିଷ୍କାର ମନା କରି ଦେଇଚି, ଏ ଅବସ୍ଥାରେ ସେ ଶୁଭକୁ ବାହା ହବନି ବୋଲି । ଗୋଟାଏ ପାଗଳକୁ କିଏ ବା କାହିଁକି ଜାଣିଶୁଣି ବାହାହବ, କହିଲ ?

ଦେବ—ସ୍ନେହ, ଭଲପାଇବା ଥିଲେ ମଣିଷ ମଣିଷ ପାଇଁ ଜୀବନ ମଧ୍ୟ ଦେଇଦିଏ, ମା ! ସୀତାର ହୁଏତ ସେମିତିକି...। ଛାଡ଼, ସୀତାକୁ ଦୋଷ ଦେଇ ଲଭ ନାହିଁ । ବଡ଼ ଡାକ୍ତରଙ୍କର ଝିଅ, ପାଠ ଶାଠ ପଢ଼ିଚି...

ସବିତା—ସବୁ ମୋ କପାଳ ଦୋଷ, ଦେବ ! ସୀତା ଆଉ ଶୁଭର ଏତେ ମନ ମିଶୁଥିଲା । ଏକାଠି ପାଠ ପଢ଼ା, ସିନେମା ଦେଖା, ଯିବା ଆସିବା, ହେଲେ ଆଜି...

ଦେବ—କାନ୍ଦନ୍ତୁନି ମା ! କାନ୍ଦନ୍ତୁନି ! ଆଖିର ଲୁହ ଦେଇ କିଛି କରି ହୁଏନି । ଜମିଦାରୀ ସିନା ଚାଲିଗଲା, ନିଜେ ଜମିଦାର ସିନା ଚାଲିଗଲେ, ହେଲେ ତାଙ୍କ ନିମକ-ଖିଆ ଗୁମାସ୍ତା ତ ବଞ୍ଚି

ରହିବ ! ଆପଣ ନିଶ୍ଚିନ୍ତ ରହନ୍ତୁ । ମୁଁ ଯୋଉଠୁ ହେଲେ ଶୁଭଲାଗି ପାର୍ଶୀଟିଏ ଠିକ୍ କରିବି ।

ସବିତା—ସତ କହୁଚ ଦେବ ! ଶୁଭଲାଗି ପାର୍ଶୀ ମିଳିବେ ? ଆମ ସ୍ୱଜାତିର ପାର୍ଶୀ ମିଳିବେ ?

ଦେବ—ସ୍ୱଜାତିର । ଏଁ ? ହଁ-ହଁ···ମିଳିବେନି କାହିଁକି ? ଗରିବ ଘରୁ ଚୋଳା କିନିଆଁ କରି ନ ହେଲେ ନେଇଆସିବା । ଆପଣ ଚିନ୍ତା କରନ୍ତୁନି ମା, ମତେ ସାତଟା ଦିନ ସମୟ ଦିଅନ୍ତୁ । ମୁଁ ଯେମିତି ହେଲେ ପାର୍ଶୀଟିଏ ଠିକଣା କରିବି । ମୋ ଶୁଭ କ'ଣ ଆଉ ସବୁଦିନ ଏମିତି ପାଗଳ ହୋଇ ବୁଲୁଥିବ ?

ସବିତା—ଦେବ !

ଦେବ—ନା-ନା, ଶୁଭ ଭଲହୋଇ ଯିବ ମା' ! ତାକୁ ଭଲ କରିବାକୁ ହବ । ତା'ଲାଗି ଯଦି ଏ ବୁଢ଼ା ଗୁମାସ୍ତାକୁ ପ୍ରାଣ ଦବାକୁ ହୁଏ, ତା ମଧ୍ୟ ସେ କରିବ ମା ! ଆପଣ ନିଶ୍ଚିନ୍ତ ରୁହନ୍ତୁ । ମୁଁ ଏଇ ସାଙ୍ଗେ ସାଙ୍ଗେ ବାହାରିଲି । ଯୋଉଠୁ ହେଲେ ପାର୍ଶୀଟିଏ ଠିକଣା ନ କଲାଯାଏ ମୁଁ ଆଉ ମୁହଁ ଦେଖେଇ-ବିନି ମା', ଆପଣ ନିଶ୍ଚିନ୍ତ ଥାନ୍ତୁ ।

[ ବ୍ୟସ୍ତଭାବରେ ଦେବେନ୍ଦ୍ର ଚାଲିଗଲେ]

ଅ ନ୍ଧା ର

———

## —ତୃତୀୟ ଦୃଶ୍ୟ —

[ ଏକ ସୁସଜ୍ଜିତ କକ୍ଷ । ଖଟ ଉପରେ ଗଦି ଓ ତକିଆ । ଅତର ଦାନି, ପାନ ଆଳିଆ, ଫୁଲ୍ ତୋଡ଼ା ଓ ମାଳ । ସେଠ୍‌ଜୀ ଗଣପତ୍ ରାମ ଓ ତାଙ୍କର ଜଣେ ବନ୍ଧୁ ବସିଚନ୍ତି । ଚନ୍ଦ୍ରିକା ଓ ସଙ୍ଗୀମାନେ ନାଚୁଥାନ୍ତି । ଚନ୍ଦ୍ରିକାର ମା ଚମ୍ପା ବସି ପାନ ସଜାଉଥାଏ । ନୃତ୍ୟ ପରେ ଅନ୍ୟମାନେ ଚାଲିଗଲେ ।]

ଗଣପତ୍—ବାଃ, ବାଃ, କମାଲ୍ କାମ୍ କରିଚ । ହାଁ କି ନେହିଁ ?

ଯୋଗେଶ—ହାଁ ଜୀ, ହାଁ ଜୀ, ବେଶକ୍, ବେଶକ୍ ।

ଗଣପତ୍—ଐସୋ ଚୋଖୋ ନାଚ୍ ମୈଁ ଦେଖା କୋନ । ହେଃ-ହେଃ, ଚନ୍ଦ୍ରିକା ! ଆଓ, ଆଓ, ଲେ ଲେ' ।

[ ନୋଟ ବଢ଼ା ଦେଖେଇଲେ, ଚନ୍ଦ୍ରିକା ମୁହଁ ବୁଲେଇ ଦେଲା ।]

ଚମ୍ପା—ଆଲୋ ମା ! ଯା ଯା, ନେଇଆ । ବଡ଼ଲୋକ ସିଏ, ହାତ ଟେକି ଯାହା ଦେଇ ଦେବେ, ସେଇ ପରା ଆମ ଲାଗି ଅମୂଲ ମୂଲ । ଯା, ସେଠ୍‌ଜୀ ପରା ଯାଚୁଚନ୍ତି । (ଚନ୍ଦ୍ରିକା ଆସିବା ସମୟରେ ସେଠଜୀ ହାତ ଧରିଲେ)

ଗଣପତ୍—ଆରେ, ଏତେ ଜଲଦି କୋଣ ଅଚ୍ଛି ? ଥୋଡ଼ା ବସି ଯାଓନା ? ହେଃ ହେଃ । ଜଓ୍ୱାନୀ କସମ୍, ତୁମ୍ ବଡ଼ା ଚୋଖୋ ନାଚ୍ କରୁଚ ।

ଚନ୍ଦ୍ରକା—ଆପଣଙ୍କର ତ ଜଓ୍ୱାନି ନାହିଁ, ଆଉ କସମ୍ ଖାଇଲେ କ'ଣ ହବ ?

ଗଣପତ୍—ଏ' ? ଆରେ ରାମ୍ ରାମ୍ ରାମ୍ । ଜଓ୍ୱାନି ଖତମ୍ ହେଇ ଗଲା କୋଣ ? ଆରେ, ବୁଢ଼ୋପେ ଜଓ୍ୱାନିକା ଯୋଶ୍ ଯ୍ୟାଦା ହୋତା ହେ, ମେରି ବୁଲ୍ ବୁଲ୍ ! ହାଁ କ ନେହିଁ ?

ଯୋଗେଶ୍—ହାଁ ଜୀ; ହାଁ ଜୀ, ବେଶକ୍ ।

ଗଣପତ୍—ଶୁଣିଲୋ ନା ? ଆରେ ଚନ୍ଦ୍ରକା, ମାନିଲିଅ ହାମ୍ ବୁଢ଼ା ହେଇଛ । ମଗର ତୁମ ତ ହାମ୍‌କୁ ଫିର ଜଓ୍ୱାନ୍ ବନାଇ ଦେଇ ପାରବ । ହାଁ କ ନେହିଁ ?

ଯୋଗେଶ୍—ହାଁଜୀ, ହାଁଜୀ, ବେଶକ୍ । ଖାଲି ଜଓ୍ୱାନ୍ କଣ, ଏକଦମ୍ ପିଲା ବନେଇ ଦବ ଆଜ୍ଞା !

ଚମ୍ପା—ହେଃ ହେଃ ହେଃ; ଆଜ୍ଞା, ପିଲାଟାର ଏ ପର୍ଯ୍ୟନ୍ତ ବୁଦ୍ଧି ଶୁଦ୍ଧି ହେଲାନି । କମିତି ଏ ସଂସାରରେ ଚଳିବ କେଜାଣି ? ଖାଲି ଆପଣ ଅଛନ୍ତି ବୋଲି ସିନା—

ଗଣପତ୍—ହେଃ ହେଃ ହେଃ, ବିଲ୍‌କୁଲ ଠିକ୍ ବାତ୍ ବୋଲେ ହେ, ଚମ୍ପା ! ଚନ୍ଦ୍ରକା ତୋ ଏକଦମ୍ ନାଦାନ୍ ଅଛି, ଏକଦମ୍ ପିଲା ଅଛି । ହେଃ ହେଃ ହେଃ, ଲେ ଚନ୍ଦ୍ରକା, ଲେ' । ପାଞ୍ଚଶୋ ରୁପିଆ ହେ; ଗଣତି କରି ରଖିବୁ, ହାଁ ? ଯାଓ, ଆରାମ୍ କରୋ, ଆରାମ୍ କରୋ ।

( ଚନ୍ଦ୍ରକା ଚମ୍ପାକୁ ଟଙ୍କା ଦେଇ ପ୍ରସ୍ଥାନ )

ଚମ୍ପା—ହେଃ-ହେଃ-ହେଃ ! ବାୟାଣୀଟେ, ତା କଥାକୁ ମନରେ ଧରିବେନ । ହେଇ ପାନ ନଅନ୍ତୁ । (ପାନ ନେଇ ଦେଲା)

ଗଣପତି—ହାଁ, ତୁମ ହାତର ପାନ୍ ବଡ଼ା ଚୋଖା ଅଛନ୍ତ—ହାଁ କି ନେହିଁ ?

ଯୋଗେଶ—ହାଁଜୀ-ହାଁଜୀ, ବଡ଼ ଚୋଖା ପାନ ଅଛି ।

ଗଣପତି—ଶୁଣ ଚମ୍ପା ! ମୁଇଁ ଯା କହିଥିଲି, କ'ଣ ଭାବିଲୁ କି ନେଇଁ ?

ଚମ୍ପା—କି କଥା କହୁଚନ୍ତି ଆଜ୍ଞା ! ଆପଣଙ୍କ କଥାକୁ ମୁଁ ଭୁଲିଯିବି? ମୁଁ ଆପଣଙ୍କ କଥା ତାକୁ ପଚାରିଥିଲି ଯେ ହେଲେ ସେଇଟା ପରା ବାୟାଣୀଟେ; ମୋଟେ ରାଜି ହଉନି ।

ଗଣପତି—ଆରେ, କୋଣ ବୁଢ଼ୁକି ତରାହ୍ କଥା କହୁଚି ? ହାମ୍ ପାଖରେ ରହିଲେ ହାମ୍ ତାକୁ ରାଣୀକରି ରଖିବ । ହାରା ଜହରତରେ ମାଲ୍‌ମାଲ୍ କରିଦେବ । ତା' ନାମ୍‌ରେ ମକାନ୍ ଲେଖିଦେବ । ଚାକର ନୌକର ସବ୍ ବନ୍ଦୋବସ୍ତ କରିଦେବ । ହାଁ କି ନେହିଁ ?

ଯୋଗେଶ—ହାଁଜୀ-ହାଁଜୀ, ଆପ୍‌କା କ୍ୟା କମ୍ ହୈ ? କହିଲେ ଘୋଡ଼ା, ହାତୀ, ଢେଙ୍କି, ବଗ ସବୁ ଦେଇଦେବେ ।

ଚମ୍ପା—ସେ କଥା ମୁଁ କ'ଣ ଜାଣିନି ? ଆପଣଙ୍କର କ'ଣ ଅଭାବ ଅଛି ? ହେଲେ ଆଉ କେଇଟା ଦିନ ସବୁର କରନ୍ତୁ । ମୁଁ ଝିଅଟାକୁ ଟିକିଏ ବୁଝେଇ ଦିଏ, ତା'ପରେ·····

ଗଣପତି—ଅଚ୍ଛା ଅଚ୍ଛା, ଠିକ୍ ହୈ; ତୁମ୍‌କୁ ସବ୍ କାମ ଲାଗିଲା । ତାକୁ ରାଜି କରାଇ ଦେବ ତୋ ତୁମ୍‌କୁ ଭି ମାଲାମାଲ୍ କରିଦେବ,ହାଁ । ହେଃ-ହେଃ ଚଲେ,ଯୋଗେଶ ! ଯାଓଗେକେନ୍‌କେ ?

ଯୋଗେଶ—ଆଜ୍ଞା ହଁ, ଚାଲନ୍ତୁ ।

ଚମ୍ପା—ପୂଜି କେବେ ବନ୍ଦ କରିବେ ? ଆପଣ ତ ଆମକୁ ଭୁଲି-
ଯାଉଛନ୍ତି !

ଗଣପତି—ହେଃ-ହେଃ-ହେଃ, କୈସେ ବାତ୍ କରୁଚ ? ହାମ୍ ତୋ
ହପ୍ତାକେ ତିନ୍ ଦଫା ଆସୁଚ; ଠିକ୍ ସେମିତି ଆସିବ ।
ଆରେ ଚମ୍ପା, ଯଦି ବେଓପାର୍ କାରବାର୍ ନାହିଁଥାନ୍ତା, ତେବେ
ହର୍‌ଦମ୍ ଇଠିଠେ ବସିଥାନ୍ତା । ହେଃ-ହେଃ-ହେଃ, ଚମ୍ପା !
ଆରେ ଜରା ଚନ୍ଦ୍ରକାକୁ ଡାକ୍‌ନା ?

ଚମ୍ପା—ସିଏ ଶୋଇପଡ଼ିବଣି କି କ'ଣ ! ଉଠେଇ ଦେବ ?

ଗଣପତି—ନେହିଁ, ନେହିଁ, ଶୋନେ ଦୋ । ଶୋନେସେ ତନ୍ଦୁରୁ
ଆଚ୍ଛା ରହେ ହୈ; ତବିୟତ୍ ଝୈଖା ରହେ ହୈ । ହାଁ କି
ନେହିଁ ?

ଯୋଗେଶ—ହାଁଜୀ-ହାଁଜୀ ! ଆମ ଶେଠ୍‌ଜୀ ଖାଲି ଶୋଇକରି
କେମିତି ଝୈଖା ତବିୟତ୍ ପାଇଛନ୍ତି, ଦେଖୁନ ?

ଗଣପତି—ଆବେ, କ୍ୟା ବୋଲି ? ମୁଇଁ ଖାଲି ଶୁଇଶୁଇ ତବିୟତ୍
ବନେଇଚ୍ଛି ?

ଯୋଗେଶ—ନେହିଁଜୀ, ନେହିଁ ଜୀ ! ଗଲ୍‌ତି ହୋଇଗଲା ।

ଗଣପତି—ବୁଦ୍ଧୁକାହିଁକା ! ପାନ ଡବ୍‌ବା, ଗଜରା, ଟୋପି, ସବ୍-
ଲେକେ ଆଓ । ହାଁ କି ନେହିଁ ?

ଯୋଗେଶ—ହାଁଜୀ-ହାଁଜୀ ! ( ଗଣପତି ପ୍ରସ୍ଥାନ । ଜଳକ୍ଷପରେ ଧରି
ଯୋଗେଶ ଅନୁସରଣ କଲା । ଟିକିଏ ପରେ ଚମ୍ପା ଡାକିଲା—)

ଚମ୍ପା—ଚନ୍ଦ୍ରା ! ଚନ୍ଦ୍ରା ! ଶୋଇପଡ଼ିଲୁ କି ଲୋ ?

ଚନ୍ଦ୍ରା—(ପ୍ରବେଶି) ନାହିଁ ଶୋଇନ; ବହି ପଢ଼ୁଥିଲି । ( ହାତରେ
ଖଣ୍ଡେ ବହି )

ଚମ୍ପା—ହଁ, ସେ ବହି ପଢ଼ି ପଢ଼ି ଆପଣା ମୁଣ୍ଡଟାକୁ ବଗାଡ଼ି ସାରିଲଣି । କଲେ, ଆମ କାମ ହେଲା ନାଚ, ଗୀତ, ହସ, ଖୁସି; ସେ ବହିରୁ ଆମକୁ କ'ଣ ମିଳିବ ? ଯେତେ କହିଲେ ମୋ' କଥା ତୋ କାନରେ ପଶୁନେଇଁ, ନା ?

ଚନ୍ଦ୍ରା—ହଉ, କାହିଁକି ଡାକଥିଲୁ କହ ।

ଚମ୍ପା—ତୋ ମୁଣ୍ଡ ଖରାପ ହୋଇଗଲାଣି କି କଲେ ? ଲକ୍ଷପତି ପିଏ; ଟିକିଏ ହସିକରି ଗୁହାଁଦେଲେ ବଡ଼ା ବଡ଼ା ନୋଟ୍ ଅଜାଡ଼ି ପକେଇବ ? ତୁ ତାକୁଇ ମୁହଁ ଛୁଞ୍ଚାଉଚୁ ? ଭାତ ହାଣ୍ଡିରେ ଗୋଇଠା ମାରୁଛୁ ? ବୁଦ୍ଧି, ଶେଷରେ ଲୋକଉପାସରେ ଗଡ଼-ମରିବୁ ଟି !

ଚନ୍ଦ୍ରିକା—କାହିଁକି ? ମୁଁ ତ' କିଛି କମ୍ ରୋଜଗାର କରୁନି । ଆଗତ ଦିନଲାଗି ସଞ୍ଚ ରଖୁନୁ ?

ଚମ୍ପା—ଆଲେ ଝିଅ, ଖର୍ଚ୍ଚ କ'ଣ ତୋ ଆଖିକି ଦିଶୁନି ? ଏ ଯେଉଁମାନେ ନାଚ ଗାଇ ଗଲେ, ସେମାନେ କ'ଣ ଟଙ୍କା ନଉନାହାନ୍ତି ? ଗୀତ ମାଷ୍ଟ୍ରା, ନାଚ ମାଷ୍ଟ୍ରା, ବାଜା ବଜେଇଲା ବାଲା, ଅତର, ଫୁଲ, ପାନ, ମସଲା, ଏଇଥିରେ ତ' ମାସକୁ ଗୁଡ଼ାଏ ଟଙ୍କା ଖର୍ଚ୍ଚ ! ତା' ଉପରେ ଘରଭଡ଼ା, ଘର ସଜାଇବା ପାଇଁ ଦାମିକା ଆସବାବପତ୍ର···ସେ ସୁ କ'ଣ ମୋଫତ୍ରେ ପଡ଼ୁଛି ? ମାସରେ ହଜାରେ ଟଙ୍କା କମେଇଲେ ବି ଶହେ ଟଙ୍କା ବଞ୍ଚେଇ ହବନି ।

ଚନ୍ଦ୍ରିକା—ମା ! ଏତେ ରୋଜଗାର କରି, ଏତେ ପରିଶ୍ରମ କରି, ଏତେ ଛୁ'ଛୁକର ଶୁଣି ଯଦି ପେଟ ପୋଷି ନ ହଉଚି, ତେବେ ଏ ଧନ୍ଦା ଛାଡ଼ି ଆଉ କିଛି କାମ ବୁଝୁନୁ ?

ଚମ୍ପା—ହଁ, ତୋର ସବୁବେଳେ ସେଇକଥା ! ଆଲେ, ବୟସ ହେଉଚି ଗୁଳୁଣା ରଥ; ଥରେ ଗୁଳିଗଲେ ଆଉ ବାହୁଡ଼ି

ଆସିବନି । ଏଇ ଦଶ ପନ୍ଦର ବର୍ଷରେ ଯାହା ରୋଜଗାର କରିଥିବୁ ତାକୁଇ ବଙ୍କଷ୍ଟର୍ଙ୍କ ମଲାଘାଏ ଚଳିବାକୁ ହେବ । ଏତେବଡ଼ ଶେଠ, ସବୁ କରିଦେବ କହୁଚି ! କୋଠା, ମଟର, ଦାସ, ଦାସୀ…

ଚନ୍ଦ୍ରକା—ମତେ ବାହା ହେବ କି ?

ଚମ୍ପା—କ'ଣ କହିଲୁ ?

ଚନ୍ଦ୍ରକା—ମତେ ବାହାହେଇ ଏଠୁ ନେଇ ଯିବ, ନା ଖାଲି ସେମିତି…

ଚମ୍ପା—ତୋ ବୁଦ୍ଧି କ'ଣ ହଜିଗଲାଣି କି ଲୋ ? ଏ ଗଳିରୁ କେହି କ'ଣ କାହାରିକୁ ବାହାହେଇ ନେଇଗଲାଣି ନା ନେବ ? ଏଠି ରହି ସେ ସ୍ୱପ୍ନ ଦେଖୁ କାହିଁକି ?

ଚନ୍ଦ୍ରକା—ମା ! ଝିଅ ଜନ୍ମ ପାଇ ବ୍ୟାହାବେଦୀ, କାଠି-ମୁକୁଟର ସ୍ୱପ୍ନ କିଏ ନ ଦେଖେ, କହିଲୁ ? ଏ ଗଳିରେ ନଥାଇ ଯଦି ମୁଁ ବାହାରେ ଆଉ କୋଉଠି ଥାନ୍ତି, ତେବେ କ'ଣ ମୋ ସ୍ୱପ୍ନ ସଫଳ ହୋଇ ନଥାନ୍ତା ? ଦଦରା ଚୂଳଘରେ ଯିଏ ରହୁଚି ତା'ର ବି ବାହାଘର ହଉଚି ମା ! ତା' ଜୀବନରେ ବି ଶଙ୍ଖମହୁରୀ, ଚଉଠି-ରାତି ଆସୁଚି । ହେଲେ ଏ ଦୋତାଲି ଉପରେ, ନୂପୁର ଝଙ୍କାର ଆଉ ହେନା ଗୁଲମେଲର ମହକ ଭିତରେ ଏ ଜୀବନ…

ଚମ୍ପା—ଥାଉ, ଥାଉ ! ବହୁତ ବଡ଼ ବଡ଼ କଥା କହୁଚି ? ବାମନ ହେଇ ଚନ୍ଦ୍ରକୁ ଧରିବାକୁ କୁଦାମାରିଲେ, ଖାଲି ତଳେ କଚଡ଼ି ହେଇ ପଡ଼ିବା ସାର ହେବରେ ଲୋ ଚନ୍ଦ୍ରା ! ଫଳ ଆଉ କିଛି ହେବନି । ଏ ସବୁ ବୁଦ୍ଧି ନ ଗୁଡ଼ିଲେ ଦିନେ ନା ଦିନେ ଲୁହ ନ କାନ୍ଦି ରକତ କାନ୍ଦିବୁ । ହଉ, ଆଉ କିଏ ଆସିବ କ'ଣ କରିବ, ଟିକିଏ ନଜର ରଖିଥା; ମୁଁ ଟଙ୍କା ତଳେ ରଖିଦେଇ ଆସେ ।

(ଚମ୍ପା ପ୍ରସ୍ଥାନ । ଚନ୍ଦ୍ରିକା ବହି ଖୋଲି ପଢ଼ିଲା; ହଠାତ୍ ବାହାରେ ଶବ୍ଦ ଶୁଣି ଖଟ ଆଡ଼ୁଆଳରେ ଆତ୍ମଗୋପନ କଲା । ପ୍ରବେଶ କଲା ଦୁର୍ଯ୍ୟୋଧନ—ବଳିଷ୍ଠ, ଦରିଦ୍ର ଯୁବକ; ସେ ଚାରିଆଡ଼କୁ ଚାହିଁଲା । )

ଦୁର୍ଯ୍ୟୋଧନ—ମଇଦାନ ସାଫ୍ ! ଚଣ୍ଡିମାତା ନାହାନ୍ତି ରେ, ଆ' ଚାଲିଆ' । (ହାତ ବଢ଼ାଇ ବେଲୁନ୍‌କୁ ଭିଡ଼ିଆଣିଲା । ବେଲୁନ୍ ଗରିବ ଚନାଚୁର୍ ବାଲାଟେ । )

ବେଲୁନ୍—କେହି ନାହାଁନ୍ତି ! ଆଃ, ଆଜି କପାଳଟା ଭଲ । ଆ···ଆ, ବସିପଡ଼; ଶେଠ୍ ସାହୁକାରଙ୍କ ଭଳି ଏ ମଖମଲ ଗଦି ଉପରେ ବସିବାର ତ ସୁବିଧା ମିଳେନି, ଆଜି ଚାନ୍ସଟା ଛାଡ଼ଦବା କାହିଁକି ?

ଦୁରି--ପକେଟ୍ ଓଜନ ଥିଲେ ଏଠି ବସିବାର ସୌଭାଗ୍ୟ ମିଳେରେ ପୁଅ ! ଆମ ଭଳି ଖାଲି-ପକେଟ୍-ବାଲାଙ୍କୁ କିଏ ଏ ସମ୍ମାନ ଦବ ? ଚନ୍ଦ୍ରିକା ଗଲା କୁଆଡ଼େ ? (ଦୁହେଁ ଦୁଇଆଡ଼କୁ ଚାହିଁଲେ)

ବେଲୁନ୍—ମରଗଲା ରେ ଦୁରି !

ଦୁରି—କିଏ ? ଚନ୍ଦ୍ରିକା ! ହାଇଁଲୋ, ତୁ ଏବେ ଏ ଖଟ ତଳେ ପଶିଚୁ ? ହେ-ହେଃ ଚନ୍ଦ୍ରିକା, ହେଇ ନେଇ ନେ; ଫାଷ୍ଟ୍ କ୍ଲାସ୍ ଚନାଚୁର୍ ଆଣିଛି ତୋ ପାଇଁ । ଥରେ ଖାଇଲେ ମୁହଁରୁ ଖଲକୁଲ୍ ଛାଡ଼ିବନି । ନେ, ଚଲ । (ପକେଟରୁ ଦୁଇଟା ପୁଡ଼ିଆ କାଢ଼ି ଚନ୍ଦ୍ରିକାକୁ ଦେଲା )

ବେଲୁନ୍—ହଁ, ଖା'ଲୋ ଚନ୍ଦ୍ରିକା, ଖା ! ସେ ମୋର ଚନାଚୁର୍ ମଁ । ଏ ହୁଣ୍ଡା ପରି ଜୋର୍‌କରି ମୋ ଝୁଲି ଭିତରୁ ଚାରିଟି ପୁଡ଼ିଆ କାଢ଼ିନେଲା । ପଇସା ଦେଇନି, ବାକି ରହିଛି । ଖା' ! ଆଜିକି

ମିଶେଇ ଦୁଖ ଉପରେ ମୋର ଟ ୨୮।୯ ବାକି ହେଲାଣି ।
ଖା, ଭଲ ଚନାଚୁର; ମୁଁ ତିଆରି କରିଚ, ଖା ।

ଦୁଖ—ତୁ ଗୋଟାଏ କେମିତି ଗ୍ରେଟ ଲୋକଟେ ରେ ? ଏ ମାମୁଲି କେତେଟା ଟଙ୍କା ବାକି ଅଛି ବୋଲି ତୁ ପୁଣି ଚନ୍ଦ୍ରିକା ଆଗରେ କହିଦେଇଚୁ ?

ଚନ୍ଦ୍ରିକା—ବୁଝିଲୁ ନା ବେଲୁନ୍ ଭାଇ ! ତୋ ହାତ ଚେନାଚୁର୍ର ସୁଆଦ ଆଉ କାହାରିଠି ନାହିଁ । ନେ···ନେ, ଟ ୨୫୯ ରଖିଥା । (ବ୍ଲାଉଜ୍ ଭିତରୁ ଟଙ୍କା କାଢ଼ିଲା । )

ବେଲୁନ୍—ହଇଲେ, ଟଙ୍କା ମୁଁ ପୁଣି ନେବ ତୋ'ଠୁ ! ମୁଁ ରୋଜଗାରିଆ ମରଦଟେ; ମୁଁ କ'ଣ ଏ ଦୁଖ ଭଳିଆ ମଟର୍ କ୍ଲିନର୍ ହେଇଚ କି······

ଦୁଖ—ଆବେ, କ'ଣ କହିଲୁ ? ମୁଁ ମଟର କ୍ଲିନର୍ ? ଆବେ ମଟର ମେକାନିକ୍ ! ହେଇ, ରେଞ୍ଚପାନ୍ନା ଦେଖୁଚୁ ନା ? ଲୁହା ଲକ୍ କଡ୍ ସାଙ୍ଗରେ ମୋର କାମ । ହାଁ, ଟିକିଏ ହାତ ମାର ଦେଖିଲୁ; ମଣିଲ୍ ସବୁ କେମିତି ଲୁହାଭଳିଆ ହେଇଚ । ମୁଁ ତ' ତୋ ଭଳିଆ ମାଇଚିଆ ହେଇନ, ରାସ୍ତାରେ ଗୀତ ଗାଇ ଚନାଚୁର ବିକିବ ? ଚନ୍ଦ୍ରା, ରଖିଦେ ସେ ଟଙ୍କା । ଆଲୋ, ମୁଁ ଧାର କରିଛି, ମୁଁ ଶୁଝିବ । ତୁ ମାଇକିନିଆଟେ ମୋ କରଜ ଶୁଝିବୁ କି ଲୋ ?

ଚନ୍ଦ୍ରିକା—ହିଁ-ହିଁ, ତୋ ମର୍ଦ୍ଦାନି ପଣିଆ ଖୁବ୍ ଜଣା ପଡ଼ିଲାଣି । ବେଲୁନ୍ ଭାଇ, ନେ, ଟଙ୍କା ଧ' । ଦିନରେ ଦି' ଟଙ୍କାର ଚନାଚୁର ବିକିବୁ; ସେଥିରେ ଯଦି ଏତେ ଟଙ୍କା ବାକି ରହେ ଚଳିବୁ କେମିତି ? ନେ' ରଖ । (ପକେଟରେ ଗୁଞ୍ଜିଦେଲା । ଦୁହେଁ ମୁହଁପୋଡ ଛିଡ଼ା ହେଲେ) ଆଚ୍ଛା, ତୁମ ଦୁହିଁଙ୍କ ଭିତରୁ କିଏ ମତେ ବାହାହେଇ ପାରିବ, କହିଲ ?

ବେଲୁନ୍—ଏଁ, ବାହାଘର ! ମୁଁ ପାରିବ ନ ବାବା ! ମୁଁ ଚନାଚୂର୍ ବାଲାଟେ, ହାଣ୍ଡି ପୋଷିବାରେ ମୋର୍ ବଳ କାହିଁ ?

ଦୁର୍ଗ—ଦେଖ୍ ଚନ୍ଦ୍ରା ! ତୋ କଥାଗୁଡ଼ାକ ଭାରି କାଟୁଛି । ତୋ ହାତରେ ଏ ଟଙ୍କା ଦେଖିଲେ, ତୋ ମୁହଁରୁ ଏ କଥା ଶୁଣିଲେ, ମୁଁ ବୁଝିପାରୁଚି ମୁଁ କେଡ଼େ ଷ୍ଟୁଟ, କେଡ଼େ ଅଯୋଗ୍ୟ ।

ଚନ୍ଦ୍ରକା—ଆଉ କ'ଣ କରିବ କହ ? ତୁମେ ତ କେହି ବାହାଘର କଥା ମୁହଁରେ ଧରୁନ; ସେଇଥିଲାଗି ନନ୍ଦିଙ୍କ ପରି ନିଜ ବାହାଘର କଥା ନିଜେ ପଚାରୁଛି । ହେଲେ ମୋ କପାଳ ଏମିତ ପୋଡ଼ା ଯେ, ଏତେ ପରେ ବି ମତେ କେହି ହେଲେ ନବାକୁ ସାହସ କରୁନାହାନ୍ତି !

ଦୁର୍ଗ—ଚନ୍ଦ୍ରା, ତୁ କିଛି ଚିନ୍ତାକରନା; ମୁଁ ନିଶ୍ଚେ ଆସିବି । ବରବେଶ ପିନ୍ଧି, ବ୍ୟାଣ୍ଡ୍ ପାର୍ଟି ଧରି ମୁଁ ଆସିବି ତତେ ନେଇଯିବାକୁ । ଖାଲି କେତୋଟା ବର୍ଷ ଅପେକ୍ଷା କରିଯା' । ମୁଁ ନିଜେ ଗୋଟାଏ ମଟର ଗ୍ୟାରେଜ୍ ଖୋଲି ସାରେ; ତା ପରେ ମୁଁ ସବୁ ଠିକ୍ କରିଦେବି ।

ଚଂପା—(ପ୍ରବେଶକରି, ହାତରେ ଝାଡୁ) ଆହା-ହା-ହା, ଆଇଲେ ମୋର ପାରିବାର ମିଣିପ ! ସବୁ ଠିକ୍ କରିଦେବେ ? ଅକର୍ମା, କର୍ମକୋଡ଼ି—ତମେ ଯୋଡ଼ାକ ପୁଣି ଆସିଚ ଏଠିକି ?

ଚନ୍ଦ୍ରକା—ଦୁର୍ଗ ଆଉ ବେଲୁନ ଭାଇ ମୋ ପାଇଁ ଚନାଚୁର୍ ଆଣିଥିଲେ ମ !

ଚଂପା—ନଅଁ ରଡ଼ ଆଣିଥିଲେ ! ଅଣ୍ଟାରେ ତ କାନି କଉଡ଼ି ନାହିଁ, ଗୁରି ପଇସାର ବାସି ଚନାଚୁର ଆଣିଚନ୍ତି, ରସିକ ହେଇ !

ବେଲୁନ୍—ଦେଖ ମାଉସୀ ! ମତେ ତୁ ଯାହା କହିବୁ କହ; ହେଲେ ମୋ ଚନାଚୁରର ବଦନାମ୍ କରିବୁ ତ ଭଲ ହବନି କହି ଦଉଚି, ହଁ !

ଚଂପା—କରେ, କରେ, ତୁ ମୋର କ'ଣ କରି ପକେଇବୁ ବା ? କ'ଣଟା କରି ପକେଇବୁ ? (ଘୁଡୁସି ଆସିଲା)

ବେଲୁନ୍—( ଭୟରେ ଦୁଗ୍ଗି ପଛରେ ଲୁଚି ) ନାଇଁ ନାଇଁ, କ'ଣ କଷ୍ଟ କରିବା କଥା କହିଲି କି ? ମୁଁ କହିଲି, ଭଲ ହବନି ବୋଲି ନା !

ଚଂପା—ହଇଲେ ହେ ଟୋକା ! ସେଠ୍‌ଙ୍କ ନୋଟ ବଣ୍ଡା ବଢେଇ ଦେଲା ବେଳେ ନାକ ଟେକ ଦଉଥିଲୁ, ହେଲେ ଗୁଡ଼ି ପଇସାର ଚନାଚୁର୍‌କୁ ତ ଘରି ଲୋଭ !

ଦୁଗ୍ଗି—ଆଲୋ ମାଉସୀ, ଦବାଲୋକର ମନଟା ହଉଚି ବଡ଼ । ଜିନିଷ ଗୁଡ଼ି ପଇସାର ହେଲେ କ'ଣ ହେଲା, ଆମ ଦିଲ୍‌ର ମୂଲ୍ୟ ପରି ଲକ୍ଷେ ଟଙ୍କା ! ଆମେ ସେମିତି ଦିଲ୍‌ବାଲା ବୋଲି ସିନା···

ଚଂପା—ତମ ଦିଲ୍ ମୁହଁରେ ନିଆଁ ! ଯାଉଚୁନା ଏଠୁ ? ବାରବୁଲା ! ଛତରଖିଆ !

ବେଲୁନ୍—ମାରି ଦେଲାଟିରି, ଦୁଗ୍ଗି···

( ଦୁଗ୍ଗି ଓ ବେଲୁନ୍ ଦୁହେଁ ପ୍ରସ୍ଥାନ )

ଚଂପା—ଆହା ମୋ ଫଟାରସିକ ! ଅଣ୍ଟାରେ ଧନ ନାହିଁ,ମତେ ଦିଲ୍ ଦେଖେଇଲେ, ଦିଲ୍ । ଏ ଟୋକା ! ଆ, ଭିତରକୁ ଆ···

( ଚଂପା ପ୍ରସ୍ଥାନ, ଚନ୍ଦ୍ରିକା ତା' ଯିବା ବାଟକୁ ଚାହିଁ ରହିଥାଏ । )

—ଅନ୍ଧାର—

## —ଚତୁର୍ଥ ଦୃଶ୍ୟ—

[ ବନ, ଖଳପଥ, ଦୂରରୁ ଚଢ଼ାଉ ଭଳି କରି ପ୍ରବେଶକଲେ ଶୁଭ ]

ଶୁଭ—ସାବଧାନ୍, ହୁସିଆର୍, ଆଟମ୍ବମ୍ ତିଆରି କରିବା ପାଇଁ ସ୍ୱୟଂ ଜଗନ୍ନାଥ ବୈଜ୍ଞାନିକମାନଙ୍କୁ ସାହାଯ୍ୟ କରୁଚନ୍ତି । ଏ ମଣିଷଗୁଡ଼ାକ ଅପଦାର୍ଥ, ଅଯୋଗ୍ୟ, Useless ! ଏଇ ସାଧାରଣ ଜ୍ଞାନବୋଧ ତ କରିପାରିଲେ ନାହିଁ ? ମଣିଷ ପିଲା ତ ଯାହା ଜନ୍ମ ହଉଚନ୍ତି, ହଉଚନ୍ତି; ସେ ତ କଲ୍କି ଅବତାର···ନଅ ସମ୍ଭାଳ ଏଥର !! କେଶବ ଧୃତ କଲ୍କି ଶରୀର···କେଶବ ଧୃତ କଲ୍କି ଶରୀର—

( ଥରକୁ ଥର କଲ୍କି ମୁଦ୍ରାରେ ଛିଡ଼ା ହେବାକୁ ଲାଗିଲା । ତା'ପରେ ହଠାତ୍ ବସିପଡ଼ି ହାତରେ ଧରିଥିବା ଚକ୍ ଖଡ଼ିରେ ଗାର କାଟି କ'ଣ ହିସାବ କଲା । କ'ଣ ଭାବି ପୁଣି ଆରମ୍ଭ କଲା— )

ଶୁଭ—ମ୍ୟାକମୋହନ୍ ସୀମା ରେଖାର ଦଖଲ ପାଇଁ ଯଦି ସମଗ୍ର ପୃଥିବୀ ଧ୍ୱଂସ ହେଇଯାଏ, ତାହା ମଧ୍ୟ ମଙ୍ଗଳ; ମାତ୍ର ସୂଚ୍ୟଗ୍ର ପରିମିତ ଭୂମି ଆମେ ଛାଡ଼ି ଦବୁ ନାଇଁ । ନେହିଁ ଛୋଡ଼େଙ୍ଗେ, ନେହିଁ ଛୋଡ଼େଙ୍ଗେ, ନେହିଁ ଛୋଡ଼େଙ୍ଗେ । ବନ୍ଦେ ମାତରମ୍, ବନ୍ଦେ ମାତରମ୍; ଜନନୀ ଜନ୍ମଭୂମିଶ୍ଚ, ସ୍ୱର୍ଗାଦପି ଗରୀୟସୀ । ( ମାଟି ମୁଣ୍ଡରେ ମାରି ଭୂଇଁରେ ମୁଣ୍ଡିଆ ମାରିବାକୁ ବସିଲା । ପ୍ରବେଶକଲା ଯୋଗେଶ । ଯଦ୍ୟସ୍ତେ ଶୁଭ ଯୋଗେଶ ଗୋଡ଼କୁ ଧରିପକାଇଲା । ଯୋଗେଶ ପଡ଼ୁ ପଡ଼ୁ ନିଜକୁ ସମ୍ଭାଳି ନେଲା )

ଯୋଗେଶ—ହାଁ-ହାଁ-ହାଁ; କଏ ସେ ? ଛାଡ଼, ଛାଡ଼ ।

ଶୁଭ—ଛାଡ଼ ଦେବ ନାହିଁ ; ଦେଇଦିଅ ମୋ ବହିତକ, ଦେଇଦିଅ—
ତା'ପରେ ଯାଇଁ ଯୋଉକଥା—

ଯୋଗେଶ—ବହି ? କି ବହି ତୋଠୁ ମୁଁ ନେଇଥିଲି ?

ଶୁଭ—ହାଉଲକ୍, ଏଲ୍ ପ୍ରିଙ୍ଗ ସାଇକୋଲଜି ଅଫ ସେକ୍ସ । ଉପେନ୍ଦ୍ର
ଭଞ୍ଜଙ୍କର ଲାବଣ୍ୟବତୀ, ଆଉ ପକେଟ୍ ସିନେମା ସଙ୍ଗୀତ;
କ'ଣ ଦବ ନା ନାହିଁ ?

ଯୋଗେଶ—ହାଁ···ହାଁ···ବାବା ଶୁଭ, ବାବା ରୁହ; ଅପେକ୍ଷା କର ।

ଶୁଭ—ହଁ, କ'ଣ କହିବାର ଶୀଘ୍ର କୁହ । ତୁମ ଜୀବନର ଶେଷ
ସମୟ ହୋଇଆସିଲାଣି । ଶୀଘ୍ର ବକ୍ତବ୍ୟ ଶେଷ କର ।

ଯୋଗେଶ—ହୋଇଛି ବାବା, ମୁଁ ଭଦ୍ରଲୋକର ପିଲାଟେ । ବ୍ୟବସାୟ
ଶିଖିବ ବୋଲି ମାରୁଓ୍ୱାଡ଼ ସେଠ ଘରେ ଗୃହଶିକ୍ଷକ କରି ବେପାର
କାରବାର ଭିତରେ ଚବିଶ ଘଣ୍ଟା ଘାଣ୍ଟି ହଉଚି । ତୁମର ସେ
ବଡ଼ ବଡ଼ ବହି ପଢ଼ିବାକୁ ମୋତେ ବେଳ କାହିଁ ବାବା ?
ଛାଡ଼, ମୁଁ ଯାଏ । ନହେଲେ ସେଠ୍‌ଜୀ ତେଣେ ମୋ ଚୁକଶାଟା
ଖାଇଦେବେ ।

ଶୁଭ—କ'ଣ ? ବହି ଦବନି ? ମୁଁ ତେବେ କ'ଣ ପରୀକ୍ଷାରେ ଫେଲ୍
ହେବି ?

ଯୋଗେଶ—ପରୀକ୍ଷା ? ବାବା ଆଜି ଦିନଟି ମୋ ଜୀବନରେ ମଧ୍ୟ
ଗୋଟାଏ ମହା ପରୀକ୍ଷାର ଦିନ । ତେଣେ ସେଠ୍‌ଜୀ ଚନ୍ଦ୍ରିକାକୁ
ନ ଦେଖି ପାଗଳ ଭଳି ହଉଚନ୍ତି । ତାଙ୍କୁ ସନ୍ତୁଷ୍ଟ କରି
ନ ପାରିଲେ ମୋ ହାଁଜୀ ଚୁକଶାରେ ମୁଁ ଫେଲ୍ ହୋଇଯିବି ।
ଛାଡ଼ିଦିଅ ବାବା ! (ବାହାରୁ ମଟର ହର୍ଣ୍ଣ ଶୁଭିଲା)

ହାଁଜୀ ! ଆଜ୍ଞାଜୀ । ହେଉଛି ସେଠ୍‌ଜୀ ମଟର ହର୍ଣ୍ଣ ବଜେଇ ବଜେଇ ବ୍ୟାଙ୍କୋଷ ଡାଉନ୍ କରି ଦେଇସାରିଲେଣି । ମତେ ଟିକିଏ ଅଫ୍ କରିଦିଅ, ମୁଁ ଯାଏ ।

ଶୁଭ—ଅଫ୍ ଆଣ୍ଡ ଡାଉନ୍, ଅଫ୍ ଆଣ୍ଡ ଡାଉନ୍; ଉତ୍ଥାନ ଓ ପତନ । ଏହା ତ ସଂସାରର ନିୟମ । ତୁମେ ଭୟ କରନା । ଧୈର୍ଯ୍ୟ ଧରି ଅପେକ୍ଷା କର । ତୁମର ଉତ୍ଥାନ ହେବ ଅତିଶୀଘ୍ର ।

( ଡାକି ଡାକି ପ୍ରବେଶ କଲେ ସେଠ୍‌ଜୀ )

ଗଣପତି—ଯୋଗିଆ ! ଓ ଯୋଗିଆ ! ଆବେ କଠ୍ଠେ ମର୍‌ଗୟା ବୁଢ୍ଢ ! ଏକ ଘଣ୍ଟୋ ମେ ହରଣ୍ ବଜାଇଲି, ତୁ ଶୁନେ କୋନିକେ ? ଯୋଗିଆ···

ଯୋଗେଶ—ହାଁ ଜୀ, ହାଁ ଜୀ ! ବଡ଼ ଅସୁବିଧାରେ ପଡ଼ିଯାଇଛି ସେଠ୍‌ଜୀ ! ମାଫ୍ କରିବେ ।

ଗଣପତି—ଅରେ, ତୁ ଏଠ୍ଠେ କେ କରି ରହେ ହୈ ?

ଯୋଗେଶ—ଆପଣ କ'ଣ ଶିବଚନ୍ଦ୍ର ହାଲିଆ ଲାଗିବାରୁ ମୁଁ ରାସ୍ତାରେ ଶୋଇପଡ଼ି ବିଶ୍ରାମ ନେଇଛି ବୋଲି ? ଦେଖନ୍ତୁ ନାହାନ୍ତି ଗୋଟାଏ ଜୀଅନ୍ତା ହରିକାଠ ହାବୁଡ଼ରେ ପଡ଼ି ଯାଇଛି ପରା ! ଦୟାକରି ଏ ହନୁମାନ କବଳରୁ ମତେ ରକ୍ଷା କରନ୍ତୁ ସେଠ୍‌ଜୀ !

ଗଣପତି—ଆବେ ପ୍ରାଡ଼ବୁନା ଅବ ଦେଖିବୁ ?

ଶୁଭ—ଭାଇ, ଭାଇମାନେ ! ଏ ଟଙ୍କାଥଳି ମତେ ଗାଳି ଦଉଛି । ହେ ଭାଇ ଟଙ୍କାଥଳୀ, ତମ ପେଟ କଣାକରି ଦବାକୁ ସର୍ବହରାମାନେ ଚେଷ୍ଟା କରୁଚନ୍ତି; ଆଜି ତମେ ସର୍ବହରାଙ୍କୁ ଜୀବନହରା କରିବା

ଲାଗି ଚେଷ୍ଟା ଚଳେଇଚ ? ତମ ଭିତରୁ କିଏ ରହିବ, ଆଜ
କିଏ ମରିବ କହିଲ ?

ଗଣପତି—ଆବେ ବେକୁବ୍ କୋଣ କହିଲୁ ? ହାମ୍ ମରିବ ?

ଶୁଭ—(ଯୋଗେଶଙ୍କୁ) ଅପ୍ ଆଣ୍ଡ ଡାଉନ୍, ଅପ୍ ଆଣ୍ଡ ଡାଉନ୍ ।
ତୁମେ ଶ୍ରମିକ, ତେଣୁ ତୁମେ ଡାଉନ୍; ସିଏ ପୁଞ୍ଜିପତି, ତେଣୁ
ସେ ଅପ୍ । କିନ୍ତୁ ଦୁଃଖ କରିବାର କ'ଣ ଅଛି ? ସେୟ ବ
କେତେବେଳେ ଖ ଡ୍ ଖ ଡ୍ ହୋଇ ଖସି ପଡ଼ିବ ଯେ ।
ଆରେ ଶୁଖା ଖଡ଼୍ ଖଡ଼୍, ମିଛ ମାୟାରେ ପଡ଼ ହେଉ
ଲଡ଼ବଡ଼, ଲଡ଼ବଡ଼, ଲଡ଼ବଡ଼ ।

ଗଣପତି—କମ୍ବକ୍ ବେହୁଦା ! ମାଗେ ମୋଜାକ୍ ଉଡ଼ା ହେ ।
ଯା' ଭାଗ୍ ପାଗଳ କାହିଁକା !

(ଶୁଭକୁ ମାରି ଠେଲିଦେଲେ । ଶୁଭ ତଳେପଡ଼ି ଚୁପ୍ ହୋଇ
ଶୋଇ ରହିଲା । ଯୋଗେଶ ଉଠିଲା ଝାଡ଼ଝୁଡ଼ ହୋଇ)

ଯୋଗେଶ—ଓ ହୋ, ଏ ପାଗଳଟା ଆଉ ଟିକକରେ ମୋ ଗୋଡ଼
ଦ'ଟା ଦୁଗୁଳା କରି ଦେଇଥାନ୍ତା । ବାପ୍‌ରେ ବାପ୍ ! କି
ଦୁର୍ଯୋଗ !

ଗଣପତି—ହେଃ ! ଭଡ଼ ଭଡ଼ ମତ୍‌କର । କୋଣ ଖବର ପାଇଲୁ
ବୋଲ୍ ।

ଯୋଗେଶ—କିଛି ଖବର ମିଳିଲାନି ଆଜ୍ଞା ! ସେ ମା'ଝିଅ କୁଆଡ଼େ
ଗଲେ ସାହି ଭିତରେ କେହି ଜାଣନ୍ତିନି । ତାଙ୍କ ଦୁଆରେ
ଏତେବଡ଼ ତାଲା ପଡ଼ିଚି ।

ଗଣପତି—କୋଣ୍, ବୁଢ୍‌ଢ଼ିକ ତରହ କହୁଚ ? ଦୋ-ଦୋ' ଠୋ
ମାଇକିଣା ମହଲା ଭିତରୁ ଚାଲିଗଲେ, ଆଉର୍ କେହି କିଛି
ଜାଣନ୍ତିନ ?

ଯୋଗେଶ—ହାଁ ଜୀ, ମୁଁ ସତ କହୁଛି । ଚନ୍ଦ୍ରିକା ଆଉ ତାର ମା', ଦୁହିଁଙ୍କୁ ଦୁହେଁ ଏକାବେଳକେ ହାଓ୍ୱା ହୋଇଗଲେ ।

ଗଣପତି—ବକ୍ ବକ୍ କୋନକର ! ଆରେ ହାମେ ତୋ ହାଓ୍ୱାରୁ ରୋକନ୍ ନିକାଲୁଛି; ହାମକୁ ପୁଣି ହାଓ୍ୱା ଦେଖାଉଛି ? ଠିକ୍ ଅଛି, ଚଲୋ ମେରା ସାଥ୍ । ହାଓ୍ୟାରୁ ମଣିଷ କେମିତି ଘୁ'ରିବ ହାମେ ଦେଖାଉଛି । ଚଲିଆ— (ପ୍ରସ୍ଥାନ)

ଯୋଗେଶ—ହାଁ ଜୀ, ଚଲିଏ ଜୀ ! ହାଓ୍ୱାରୁ ମଣିଷ କ'ଣ ପଣସ, ଗଣେଷ ସବୁ ତୁମେ ବାହାର କରି ପାରିବ । ଅଣ୍ଡାରେ ଧନ ଥିଲେ ନ ହବ କ'ଣ ? ହାଁ ଜୀ, ଆସୁଛି··· (ପ୍ରସ୍ଥାନ)

( ଶୁଭ ସେହିପରି ଶୋଇରହି ଗୀତ ଗାଇଉଠିଲା )

ଶୁଭ—ବାଧିଲା ଜାଣି କ୍ଷମା କର ନୋହିଲେ ରମା ରମଣ ଦଣ୍ଡେ ଦିଅ ଟାଳ, ତୁମ୍ଭଙ୍କୁ ଜଗନ୍ନାଥ ଆଜ ମୋ ମନୋରଥ ପୂର୍ଣ୍ଣ କରିବ ଦେଇ ଗାଳ ହେ, କୃପାସିନ୍ଧୁ !

( ପ୍ରବେଶ କରିଚନ୍ତି ଦେବେନ୍ଦ୍ର । ଶୁଭକୁ ଏପରି ଅବସ୍ଥାରେ ଦେଖି ମନରେ ଆସିଛି ଭୀଷଣ ଦୁଃଖ । ଧିରେ ଧିରେ ପାଖକୁ ଯାଇ ଶୁଭକୁ ଡାକିଚନ୍ତି କୋମଳ ସ୍ୱରରେ )

ଦେବ—ଶୁଭ ! ଶୁଭ, ଚାଲ ବାବା, ଘରକୁ ଯିବା ଚାଲ ।

ଶୁଭ—କିଏ ? ଦେବଦା ! ଆସ ଆସ, ଦେଖିବ ଆସ । ମୁଁ ଏଠି ତଳକୁ ଚାହିଁ କେତେ **interesting** ବିଷୟ ସବୁ ଦେଖୁଥିଲି । ଏ ମାଟିରେ ମୁହଁମାଡ଼ି ତଳକୁ ଚାହିଁଲେ ଏକଦମ୍ ପାତାଳଯାଏ ପରିଷ୍କାର ଦେଖାଯାଉଛି । ଆସ, ଦେଖିବ ଆସ ।

( ପୁଣି ମୁହଁ ତଳକୁ କରି ଚାହିଁଲା । ଦୁଃଖରେ ଦେବେନ୍ଦ୍ର ହତବାକ୍ )

ଦେବ—ଶୁଭ ?

ଶୁଭ—ହେଇଟି, ବେଲୁନସେନର କଣ୍ଠା ମୁଣ୍ଡଟା କମିତ ମିଠି ମିଠି କର ଗୁଣ୍ଟିବ ଦେଖିଲଣି ? ମହାଭାରତ ଯୁଦ୍ଧର ଭିତରିଆ କଥା ସବୁ ତାକୁ ଭଲଭାବରେ ଜଣା ଅଛି । ଆମ ଏ ପୃଥିବୀରେ ଯୋଉ ଆଣବିକ ମହାଭାରତ ଯୁଦ୍ଧ ଲାଗିବ ତା'ର ନୀରବ ଦର୍ଶକ ହୋଇ ମୁଁ ରହିବ । କୋଉଠି ଉଚ୍ଚା ଯାଗା ଦେଖି ନିରାପଦରେ ବସିପାରିଲେ ଯୁଦ୍ଧଟା ଦେଖିବାକୁ ମଜା ଲାଗନ୍ତା । ଦେବଦା ! ତୁମେ ଚାଲନା ମୋ ସାଙ୍ଗରେ ? ଏଭେରେଷ୍ଟ୍ ଉପରେ ଦେବାଧିଦେବ ବମ୍ ଭୋଳା ଅଛନ୍ତି । ତାଙ୍କୁ ମୁଣ୍ଡିଆଟିଏ ମାରି ପୁଣ୍ୟ ଅର୍ଜ୍ଜନ କରି ଆସିବା !

ଦେବ—ହଁ ଚାଲ, ଯିବାର ଆୟୋଜନ କରିବା । ତେନ୍‌ସିଂଙ୍କ ପାଖକୁ ଚିଠି ଲେଖି ଜନିଷପତ୍ର ସବୁ ସଜାଡ଼ି ବାହାରିପଡ଼ିବା ।

ଶୁଭ—ଠିକ୍ ଅଛି ଦାଦା, ଚାଲ ।

(ଦୁହେଁ ପ୍ରସ୍ଥାନ—ବିପରୀତ ଦିଗରୁ ପ୍ରବେଶକଲେ ଦୁଗ୍ ଓ ବେଲୁନ୍ । ଦୁଗ୍ ରାଗରେ ଫାଟି ପଡ଼ୁଥାଏ; ତା' ହାତରେ ଗୋଟାଏ ବଡ଼ ଟାୟାର ଲିଭର୍ )

ବେଲୁନ୍—ଆରେ ପୋଲିସ୍ ଧରିନେବେ ରେ ଦୁଗ୍ ! ଫାଶି ଦେଇଦେବେ ରେ !

ଦୁଗ୍—ଫାଶି ପାଏ କି ଜେଲ୍ ଯାଏ; ହେଲେ ଚନ୍ଦ୍ରାକୁ ଆଜି ଖୁନ୍ କରିଦେବି । ଅରେ ଗୋଟାଏ ଗୁର୍ ନାଚନେବାଲି, ତା'ର ପୁଣି ଏତେ ଦମାକ୍ ? ମତେ ଫାଙ୍କିମାରି ପଳେଇଯିବ ! ମୋ ରାଗ ଦେଖି ନାହିଁନା ? ମୁଁ ରାଗିଲେ ବାପର ବି ନୁହେଁ, ହାଁ ।

ବେଲୁନ୍—ଆରେ କ'ଣ ହେଇଚି କଥାଟା କହ । ଟିକିଏ ଶୁଣିବା, ବୁଝିବା, ଦେଖିବା ।

ଦୁଖ—ଚୁପବେ ! ତୁ କ'ଣ ଶୁଣିବୁ, ଦେଖିବୁ ? ଚନ୍ଦ୍ରାକୁ ବାହା-ହେଇ ଘରକୁ ଆଣିବ ବୋଲି ପାଞ୍ଚ ପଇସା ଦଶ ପଇସା କରି ଯେତେବେଳେ ଯାହା ପାଇଲି ସଞ୍ଚି ରଖୁଥିଲି । ସିଗାରେଟ୍ ଗୁଡ଼ ଖଡ଼ ଟାଣିଲି । ପନ୍ଦରଣିଆ ଟିକଟ୍ ନ କରି ପାଞ୍ଚଣିଆରେ ସିନେମା ଦେଖିଲି । ନୂଆ ଲୁଗାପଟା ତିଆରି ନ କରି ଚିରା ଫଟା ଲୁଗା ସିଲେଇକରି ପିନ୍ଧିଲି···

ବେଲୁନ୍—ହଁ, ମୋଠୁଁ ଉଧାର କରି ଚନାଚୁର୍ ନେଇ ତାକୁ ଖୁଆଇଲୁ । ଧାର ଟଙ୍କା ଚନ୍ଦ୍ରା ଶୁଝିଲ୍—

ଦୁଖ—ଯା'ବେ, ଘରି ଚନାଚୁର୍ ଦେଖେଇଲ୍ ? ଆଉ ଚନାଚୁର୍ କ'ଣ ହବ ବେ ? ଖାଇଲାବାଲି ତ ହୁ ! ଆଉ ଚନାଚୁର୍ ଦେଖଉଛ ?

ବେଲୁନ୍—ଖାଇଲାବାଲି ହୁ ? କ'ଣ ଚନ୍ଦ୍ରକା କୁଆଡ଼େ ପଳେଇଛି ନା କ'ଣ ?

ଦୁଖ—ହଁ-ବେ, ଆଉ ତୁ କ'ଣଟା ବୁଝିଲୁ ? ଚନ୍ଦ୍ରକା ପଳେଇ ଯାଇଛି ।

( ମୁହଁ ପୋତି ମନଦୁଃଖରେ ବସିପଡ଼ିଲ୍ )

ବେଲୁନ୍—କୁଆଡ଼େ ଯାଇଛି ?

ଦୁଖ—ଜାଣିନି ।

ବେଲୁନ୍—କେବେ ଗଲ୍ ?

ଦୁଖ—ଜାଣିନି ।

ବେଲୁନ୍—କାହା ସାଙ୍ଗରେ ଯାଇଛି ?

ଦୁଖ—ଜାଣିନି ବେ !

ବେଲୁନ୍—ତା' ମା ?

ଦୁରି—ମୁଁ କଣ୍ଟ ଜାଣିନି ବେ ! ଘରେ ତାଲା ପଡ଼ିଛି । ଯାଇ ପଡ଼ିଶା କହିଲେ ଚାରିଦିନ ହେଲା ଘର୍ହେଁଯାକ କୁଆଡ଼େ ଯାଇଛନ୍ତି, କେହି ଜାଣିନାହାନ୍ତି ।

ବେଲୁନ୍—ମୋ ବାକିଆ ପଇସା କିଏ ଦବ ?

ଦୁରି—କ'ଣ କହିଲୁ ?

ବେଲୁନ୍—ଆରେ, ତୋ ଉପରେ ମୋର ପୋଡ଼ ଚାରିଟଙ୍କା ଆଠଣା ବାକିଅଛି, ସେ ପଇସା ମତେ ଦବ କିଏ ? ତୋଠୁଁ ମୋର କ'ଣ ବାକିଆ ପଇସା ଅସୁଲ ହବ ? ମୋ ପଇସା ଦବ କିଏ ?

ଦୁରି—କେଡ଼େ ଶ୍ରେଷ୍ଠ ଲୋକଟାରେ ତୁ ? ଦି'ଦିଟା ଲୋକ କୁଆଡ଼େ ଅନ୍ତର୍ଦ୍ଧାନ ହୋଇଗଲେ; ସେକଥା ନ ଭାବି ତୁ ଏ ମାମୁଲି ସାଢ଼େ ଚାରିଟଙ୍କା ଲାଗି କାନ୍ଦୁଚୁ ?

ବେଲୁନ୍—କାନ୍ଦୁଚି କିଏ ବେ ? ମୁଁ ଭାରି ରାଗିଗଲିଣି । ହାଁ, ମୋ ବାକିଆ ପଇସା ନ ପାଇଲେ ବେକରେ ଗାମୁଛା ପକେଇ ଦେବି; ବିଚ୍ ରାସ୍ତାରେ ବେଇଜତ୍ କରି ଦେବି—ହାଁ—ମତେ ଚିହ୍ନିଚୁନା ? ମୋ ନାଁ ବେଲୁନ୍ ଟି !

ଦୁରି—( ରାଗରେ ଟାୟାର ଲିଭର୍ ଉଠାଇ ) ଆବେ ହେ ! କାହା ବେକରେ ଗାମୁଛା ପକେଇବୁ ବେ ? କାହାକୁ ବେଇଜତ୍ କରିବୁ ?

ବେଲୁନ୍—ମାରି ପକେଇଲା ରେ (ଧାଇଁ ପଳେଇଗଲା)—

ଦୁରି—ହୁଁ ଃ । ମୋ ସାଙ୍ଗରେ ଖେଳିକ, ନାହିଁ ? ମୁଁ ଥରି ଥରି କହିଗଲି—ମୁଁ ଆସିବି ବରବେଶ ପିନ୍ଧି, ବ୍ୟାଣ୍ଡ ବଜେଇ; ହେଲେ ଅପେକ୍ଷା କରି ପାରିଲା ନି ? ଆଚ୍ଛା, ମୋ ରାଗ ବି କୁକୁର ରାଗ; ତତେ ମୁଁ ସହଜେ ଛାଡ଼ୁଚି ? କୋଉଠି ତୁ

ଲୁଚିବୁ ରହିଥା, ଯଦି ମୁଁ ତତେ ଘୋଷାଡ଼ି ଘୋଷାଡ଼ି ନ ଆଣିଛି । ମୋ ନାଁ ଦୁର୍ଯ୍ୟୋଧନ ଦାଶ ନୁହେଁ ! ଆରେ ମତେ ଚହ୍ନିଚୁ ନା ? ଆଚ୍ଛା ! !

( ରାଗରେ ଗର ଗର ହୋଇ ଚାଲିଯାଉଥିଲା )

—ଅ ନ୍ଧା ର—

———

## —ପଞ୍ଚମ ଦୃଶ୍ୟ—

**[ ଗ୍ରାମ ଉପର ଦୂରପାଖରେ ଦୁଇଟି ଘରର ଦ୍ୱାର ଦେଖାଯାଉଛି । ଆଗରେ ମଝିରେ ଖୋଲା ଗ୍ରାମ । ପଛରେ ପାଣିଟାଙ୍କି ଓ ଗ୍ରାମବାଡ଼—ଉଛରେ ଦେଖାଯାଉଛି ଘରର ଚୂଳ ଓ ଖାଲ ଅକାଶ । ରେଲ୍ଡ଼ଓର ଏଣ୍ଠଳ ଅଛି ଓ ଲୁଗା ଶୁଖାଇବା ପାଇଁ ତାର ଅଛି । ସମସ୍ତ ଦିନ । ]**

( ମଣି ଓ ସୀତା କଥାବାର୍ତ୍ତା କରୁଥିଲେ )

ସୀତା—ବଡ଼ ଆଶ୍ଚର୍ଯ୍ୟ କଥା ! ଏଇ ମାସକ ଲାଗି ଅମେ ବାହାରକୁ ଯାଇଥିଲୁ, ଆଉ ତା'ର ଭିତରେ ଶୁଭର ବାହାଘର ହୋଇଗଲା ?

ମଣି—କ'ଣ ଆଉ କରିବୁ ସୀତାଅପା ! ତୁମ ବାପା ତ କହିଗଲେ ଯେ, ବାହାଘର ହେଇପାରିଲେ ଅବା ଶୁଭଙ୍କର ମତିଗତି ଫେରି ଆସିବ । ଦେବ ଦାଦା ଝୋଟକଲେଜ୍ ଗିରିବ ଘରୁ ଗୋଟିଏ ଟୋକାକନିଆଁ ନେଇଆସି······

ଘାଁଚା—ଚୋଳାକନଆଁ ?

ମଣି—ହଁ, ବାପଟା କୁଆଡ଼େ ଗୁଲି ଗଞ୍ଜେଇ ଖାଇ ସର୍ବସ୍ୱ ଉଡ଼େଇ ଦେଇଚି । ସେଇ ନିଶା ଲାଗି ତ ଝିଅକୁ ବନ୍ଧକୀ କରିଦେଲା ।

ଘାଁଚା—ସତେ ? କେତେ ଟଙ୍କାରେ ଶୁଭ ଲାଗି ପାର୍ଟୀ କିଣିଲ ?

ମଣି—ପୂର୍ବ ପାଞ୍ଚହଜାର ନେଲା ପରା ! ହେଲେ ନୂଆବୋଉଟି ମୋର ଲକ୍ଷ୍ମୀଟିଏ । ଦେଖିବାକୁ ଯେମିତି ସୁନାଖଡ଼ିକା, ଗୁଣ ବି ସେମିତି ଧୀର, ସ୍ଥିର । ବୋଉ ତାକୁ ମୁଣ୍ଡରେ ବସେଇଚି—

ଘାଁଚା—ସତେ ନା କ'ଣ ? ମାସକ ଭିତରେ ଗୋଟାଏ ଭିକାରୀର ଝିଅ ଏ ଘରର ସମସ୍ତଙ୍କୁ କିଣିନେଇ ପାରିଲାଣି ? ତେବେ ମୋର ବୋଧହୁଏ ଆଉ ଏଠିକି ଆସିବା ଠିକ୍ ହବନାହିଁ, ନା କ'ଣ ?

ମଣି—ଛି ଛି, କି କଥା କହୁଚ ଘାଁଚାଅପା ! ନୂଆବୋଉ ଆସିଚି ବୋଲି ତୁମେ ଯିବାଆସିବା ବନ୍ଦ କରିଦବ କାହିଁକି ? ଆମ ଘର ସାଙ୍ଗରେ ତୁମର ପିଲାଦିନରୁ ସମ୍ପର୍କ । ଶୁଭ ଭାଇ ସାଙ୍ଗରେ ତମର ବାହାଘର ପ୍ରସ୍ତାବ ଥିଲା—

ଘାଁଚା—ସେଇଥିଲାଗି ତ କହୁଚି ମଣି, ମୋର ଆସିବା ଆଉ ଉଚିତ ହବନି । ତୋ ନୂଆବୋଉ ହୁଏତ ମତେ ସନ୍ଦେହ କରିବ; ଆଉ ତା'ଛଡ଼ା ଶୁଭ ଯେତେବେଳେ ବାହା ହୋଇ ସାରିଲାଣି, ବିବାହିତଙ୍କ ସହିତ ଅବିବାହିତାଙ୍କର ବନ୍ଧୁତା ଅସୁନ୍ଦର ଦେଖାଯିବ । ଏ ଘରେ ବୋହୂର ଆସନ ଖାଲି ଥିଲା, ମୁଁ ଯା' ଆସ କରୁଥିଲି । ତୁମେ ଯେତେବେଳେ ଆଉ ଜଣକୁ ଆଣି ସେ ଆସନରେ ବସେଇ ସାରିଲଣି, ତେଣୁ **No Vacancy**, ନା କ'ଣ ?

ମଣି—ସୀତା ଅପା, ତୁମେ ଯଦି ଆସିବାକୁ ରାଜିଥାନ୍ତ, ତେବେ ଆମେ ତ ଆଗ୍ରହରେ ତୁମକୁଇ ଆଣିଥାନ୍ତୁ । ମାତ୍ର ଗୋଟିଏ ବଦ୍ଧ-ପାଗଳକୁ ବାଧା ଦେବନି ବୋଲି ତୁମେ କହିଲରୁ ସିନା···

ସୀତା—ଥାଉ ମଣି, ସେସବୁ ଦୋହରେଇ କହି ଲାଭ ନାହିଁ । କାହିଁ, ତୋର ନୂଆବୋଉକୁ ଟିକିଏ ଦେଖା; ପାଞ୍ଚ ହଜାର ଟଙ୍କାରେ ଯୋଉ ତୋଳାକନିଆଁଟି କିଣିଆଣିଚ, ଆଉ ଯାହାର ରୂପ ଗୁଣ କୀର୍ତ୍ତନରେ ତୁ ପଞ୍ଚମୁଖ ହୋଇ ଉଠିଚୁ ତାକୁ କ'ଣ ମୁଁ ଥରେ ଦେଖି ପାରିବି ନି ? ହାଃ-ହାଃ ! ଆଲୋ, ମୁହଁଗୁହାଁ ପଇସା ଦେବି ଲୋ···ଯାଁ' ଯା', ଡାକିଲୁ ତୋ ନୂଆବୋଉକୁ ।

ମଣି—ନୂଆବୋଉ ପରା ତଳେ **Bath-room**ରେ ଅଛି । ଆସିବ ସେ ଏଇନେ—

ସୀତା—ସକାଳୁ **Bath-room**ରେ ?

ମଣି—ସେ କ'ଣ ତୁମପରି ଯାଇବାଣୀ ହୋଇଚନ୍ତି ? ସେ ପରା ନଥିଲା ଘରର ଝିଅ; ସକାଳୁ ଗାଧୋଇବ, ମା' ପୂଜାସାରି ପାଦୁକ ପାଣି ଦେଲେ ଯାଇ ଜଳସ୍ପର୍ଶ କରିବ । ତା'ପରେ ଗୃହଲି ଭାଇଙ୍କର ସେବାଯତ୍ନ—

ସୀତା—**Good God** ! କ'ଣ କହୁଚ ମଣି ? ବୁଝିଲି, ସେଇଥିଲାଗି ମାଉସୀ ତାକୁ ମୁଣ୍ଡରେ ବସେଇଚନ୍ତି, ନାହିଁ ? ମାଉସୀ ତେବେ ତାଙ୍କ ମନଲାଖି ବୋହୂଟିଏ ପାଇଚନ୍ତି । ମୋର ଧାରଣା ଥିଲା ଯେ ଶ୍ରେଷ୍ଠଘରର ଝିଅର ମନ, ବୁଦ୍ଧି, ବ୍ୟକ୍ତିତ୍ୱ ସବୁ ଶ୍ରେଷ୍ଠହେବା ସ୍ୱାଭାବିକ୍; ମାତ୍ର ମୋର ଧାରଣା କ'ଣ ଭୁଲ ?

(ହଠାତ୍ ମଧ ପ୍ରବେଶ କରି ସେମାନଙ୍କୁ ଦେଖି ଅଟକି ଯାଇଚି । ହାତରେ ତା'ର ଓଦାଶାଢ଼ୀ, ମୁକୁଳା ବାଳ, ଟିକିଏ ରହିଁରହି ମୁଣ୍ଡ ଉପରକୁ ଓଢ଼ଣା ଟାଣିନେଇ ଚାଲିଯାଇଛି)

ମଣି—ଏଇ ମୋ ନୂଆବୋଉ; ଦେଖିଲ ?

ଶାନ୍ତା—ହଁ ଦେଖିଲି; Not bad, ମାନେ ଯାହାକୁ କୁହନ୍ତି ଚଲେବୁଲ୍ । ତା' ନାଁ କ'ଣ ?

ମଣି—ମଧୁମୁଖୀ—ମଧୁ ।

ଶାନ୍ତା—ବାଃ ସୁନ୍ଦର ନାଁଟିଏ ତ । ମଧୁ, ମଧୁ ! (ଡାକିଲା । ମଧୁ ଫେରି ଗୃହିଁଲା )

ମଣି—(ପାଖକୁ ଯାଇ) ନୂଆବୋଉ, ଚାଲ ତୁମକୁ ଶାନ୍ତାଅପା ସାଙ୍ଗରେ ପରିଚୟ କରାଇ ଦିଏ । ( ପଛକୁ ଅାଣି ) ସେ' ହରିଚନ୍ଦ୍ର କୁମାରୀ ଶାନ୍ତା ମହାପାତ୍ର, B. A. ସେକେଣ୍ଡଇଅର୍; ବିଖ୍ୟାତ ଡାକ୍ତର ଗୋପାଳ ମହାପାତ୍ରଙ୍କର ଏକ ମାତ୍ର ଝିଅ । ଆମ ଶୁଭଭାଇ ସାଙ୍ଗରେ ଯାଁ'ଙ୍କର ବାହାଘର ପ୍ରସ୍ତାବ ପଡ଼ିଥିଲା ।

ମଧୁ—ନମସ୍କାର !

ଶାନ୍ତା—(Hand bagରୁ ଦଶଟଙ୍କା କାଢ଼ି) ନମସ୍କାର ! ତୁମକୁ ଦେଖି ଭାରି ଖୁସିହେଲି । ତୁମ ପ୍ରଶଂସା ଲାଗି ତ ଭାଷା ଖୋଜି ପାଉନି । ନଅ—

ମଧୁ—(ହାତ ବଢ଼େଇଦେଉଥିଲା ମାତ୍ର ଅଟକିଯାଇ) ସେ' କ'ଣ ?

ଶାନ୍ତା—ତୁମରି ମୁହଁଦେଖା । ଶୁଭ ମୋର ଅତି ଅନ୍ତରଙ୍ଗ ବନ୍ଧୁ ଥିଲା । ଏକାଠି ପଢ଼ିବା, ଖେଳିବା, ଖାଇବା—ଦିନର ଅଧିକାଂଶ ସମୟ ଆମର ଏକାଠି କଟୁଥିଲା । ମାତ୍ର ଭାଗ୍ୟର ବିପର୍ଯ୍ୟୟ, ତା'ର ମୁଣ୍ଡ ଖରାପ ହେଇଗଲା; ଆଜି ତୁମେ ତା'ର ସ୍ତ୍ରୀ ହୋଇ ଆସିଲ ଏ ଘରକୁ । ଶୁଭର ସ୍ତ୍ରୀକୁ ମୁଁ ମୁହଁଦେଖା ଦେବି ନି ? ନଅ—

ମଧୁ—ନା; ବୋଉଙ୍କୁ ଦେଇଦେବେ ।

ସୀତା—କାହିଁକି ? ମୋ ହାତରୁ ଟଙ୍କା ନେଲେ ତୁମ ସମ୍ମାନରେ ଆଘାତ ଆସିବ ନା କ'ଣ ?

ମଧୁ—ଦେଖନ୍ତୁ, ସମ୍ମାନଟା ଯେ କ ଜନଷ ତା ମୁଁ ଏ ପର୍ଯ୍ୟନ୍ତ ବୁଝି ପାର ନ ।

ସୀତା—ତା' ସତ । ସମ୍ବଳହୀନ ନିଃସ୍ୱ ଘରୁ ଆସିଚ ଯେତେବେଳେ ସମ୍ମାନ ସହିତ ବିଶେଷ ପରିଚୟ ନ ଥିବାଟି ସ୍ୱାଭାବିକ୍ ।

ମଧୁ—(ରାଗିଉଠି) ମାନେ ? ଆପଣ କ'ଣ କହିବାକୁ ଚାହାନ୍ତି ?

ମଣି—ନୂଆବୋଉ ?

ମଧୁ—( ସଜ୍ଜିତ ହୋଇ ) କ୍ଷମା କରିବେ, ବୋଉଙ୍କର ପୂଜା ବଢ଼ିବଣି ବୋଧହୁଏ । ମଣି ! ସୀତା ଦେବୀଙ୍କୁ ନେଇ ଟିକେ ଜଳଖିଆ ଦିଅ । ଏ ପରିବାର ସହିତ ତାଙ୍କର ବହୁତ ଦିନର ପରିଚୟ; ତୁମ ଭାଇଙ୍କ ସାଙ୍ଗ । ତାଙ୍କର ଚର୍ଚ୍ଚାରେ ଯେମିତି ତ୍ରୁଟି ନହୁଏ ।

ମଣି—ସେକଥା ମୋର ମନେ ଅଛି ମ ନୂଆବୋଉ !

ମଧୁ—ମୁଁ ଆସେ, ଆଉ କେତେବେଳେ ଆସିଲେ ଆଳାପ କରିବା ।
( ଚାଲିଗଲେ ଘରକୁ )

ମଣି—ସୀତାଅପା ! ଚାଲିଲ, ଟିକେ ଖାଇବ ଚାଲ । (ସୀତା ଅନ୍ୟମନସ୍କ) ସୀତାଅପା !

ସୀତା—(ପ୍ରକୃତିସ୍ଥା ହୋଇ) ଁ ? ହଁ, ମଣି ! ତୁମ ନୂଆବୋଉଟି ବେଶ୍ ସୁନ୍ଦର । ବ୍ୟବହାର ଅତି **polished**.

ମଣି—ଆଲ କ'ଣ ସେତିକ ? ଦେଖିଲ, ମୋ ମୁଣ୍ଡ କେମିତି ବାନ୍ଧି ଦେଇଚନ୍ତି । ( ମୁଣ୍ଡ ଖୋସା ଦେଖାଇ )କେତେ ପ୍ରକାର

ମୁଣ୍ଡବନ୍ଧା ଯେ ତାଙ୍କ ଜଣା, ନଦେଖିଲେ ତୁମେ ବିଶ୍ୱାସ କରି-
ପାରିବ ନ ପରା ।

ଗୀତା—ସତେ ? ତୁମ ଭାଇଙ୍କ ମନକୁ ଏକଦମ୍ ଭୁଲେଇ ଦେଲେଣି
ବୋଧହୁଏ ?

ମଣି—ସେକଥା ଆଉ କାହିଁକି ପଚାରୁଛ ଗୀତାଅପା ? ଭାଇଙ୍କୁ
ଭୁଲେଇବା ଲାଗି ସେ ଯେ କେତେ ପ୍ରକାର ବେଶ, କେତେ
ଗୀତ, କେତେ ନାଚ୍—

ଗୀତା—ବେଶ ? ଗୀତ ? ନାଚ ?

ମଣି—ହେଇଟି ଗୀତାଅପା ! କାହାରିକି କହିବନି ଟି ? ବୋଉ
ଶୁଣିଲେ ମତେ ବହୁତ ଗାଳିଦେବ ।

ଗୀତା—ଆଲୋ ନାହିଁ, ମୁଁ କାହାରିକି କହିବିନି । କ'ଣ ହେଇଚି
କହୁନୁ ?

ମଣି—ବୋଉ ତ ସାନ୍ଧ୍ୟ ଆଇନ୍ ଜାରି କରି ଦେଇଚି । ସନ୍ଧ୍ୟାପରେ
କେହି ଏ ଉପର ମହଲାକୁ ଆସି ପାରିବେନି । ହେଲେ ମୁଁ
ଲୁଚିଛପି ମଝିରେ ମଝିରେ ଆସେ, ଏଇମିତି ଦୁଆର ଫାଙ୍କରେ
ଦେଖେ ।

ଗୀତା—କ'ଣ ?

ମଣି—ନୂଆବୋଉ ଖୁବ୍ ସୁନ୍ଦର ସଜେଇ ହେଇ, ଗୀତ ଗାଇ,
ନାଚି, ଭାଇଙ୍କୁ ଭୁଲେଇବାକୁ ଚେଷ୍ଟା କରନ୍ତି । ସେ ବେଶରେ,
ସେ ଅବସ୍ଥାରେ ତୁମେ ଯଦି ନୂଆବୋଉଙ୍କୁ ଦେଖ ନା,
ମୋଟେ ଚିହ୍ନି ପାରିବ ନି ।

ଗୀତା—ସତେ ? ତୁମ ନୂଆବୋଉ ଭାଇଙ୍କ ପାଖରେ ଏକାବେଳେ
ଭିନ୍ନରୂପ ନିଏ; ନାହିଁ ।

ମଣି—ହଁ, ମୁଁ କ'ଣ ଆଉ ମିଛ କହୁଚି ? ଭାଇଙ୍କ ମନ ଜାଣିବାକୁ ନୂଆବୋଉ ଯେ ମୋର କେତେ ପରିଶ୍ରମ ନ କରୁଚନ୍ତି—

ସବିତା—(ପ୍ରବେଶ କରୁ କରୁ) ସେଇଟା ତ ପ୍ରତ୍ୟେକ ସ୍ତ୍ରୀର ଧର୍ମ । ସ୍ତ୍ରୀ ଯଦି ସ୍ୱାମୀର ମନକୁ ଜୟ କରି ନ ପାରିଲା, ତେବେ ସ୍ତ୍ରୀ ଜନ୍ମରେ ସାର୍ଥକତା କୋଉଠି ?

ଗୀତା- ନମସ୍କାର ମାଉସୀ !

ସବିତା—ବୁଢ଼ୀଟିଏ ହୋଇଥା ମା ! କେବେ ଫେରିଲୁ ଗୋପାଳ-ପୁରରୁ !

ଗୀତା—କାଲି ରାତିରେ ଆସି ପହଞ୍ଚିଲି; ଶୁଭଙ୍କ ସ୍ତ୍ରୀକୁ ଦେଖିବାଲାଗି ମନରେ ଏତେ ଆଗ୍ରହ ଥିଲା ଯେ, ସକାଳୁ ବିଛଣା ଛାଡ଼ି ତ ଚାଲିଆସିଚି ।

ସବିତା—କ'ଣ କରିବ ଲୋ ଝିଅ ! ପୁଅ ପାଗଳକୁ ବୋହୂ ତୋଳା-କନିଆଁ । ସେଥିଲାଗି ବେଶି ଆଡ଼ମ୍ବର ନ କରି ଚୁପ୍‌ଚାପ୍ କାମ ସାରିଦେଲି । ଦେଖିଲୁଣି ?

ଗୀତା—ହଁ ।

ସବିତା—ଲକ୍ଷ୍ମୀଟିଏ ତ । ଘରଣୀର କର୍ତ୍ତବ୍ୟ, ବୋହୂର କର୍ତ୍ତବ୍ୟ ସେ ଠିକ୍ କରିଯାଉଚି । ଆଉ ସ୍ତ୍ରୀ ହିସାବରେ ସ୍ୱାମୀର ସ୍ନେହପାଇଁ ସେ ଯାହା ପରିଶ୍ରମ କରୁଚି, ତା' ଦେଖିଲେ ଶଙ୍କରଙ୍କ ଲାଗି ପାର୍ବତୀଙ୍କର ତପସ୍ୟା କଥା ମନେ ପଡ଼ିଯାଏ ଯିବା !

ଗୀତା—ହଁ, ସେଇ କଥା ମଣି ବର୍ତ୍ତମାନ କହୁଥିଲା । ହେଇ ନିଅ ମାଉସୀ, ମଧୁର ମୁହଁଦେଖା ବାବଦ ଏ ଟଙ୍କା ରଖ ।

ସବିତା—ତାକୁ ଦେଇଦେଲୁନି ?

ମଣି—ସିଏ କ'ଣ ନେଲେ କି ? କହିଲେ ମା'ଙ୍କୁ ଦେଇଦେବ ।

ସବିତା—ହେଃ-ହେଃ; ହଜ ହଜ, ମା' ସୀତା ! ଟଙ୍କାଟା ସେଇ ମଣିକୁ ଦେଇ ଦେ, ମୁଁ ପୂଜାକରି ଆସୁଛି । ମଠାଟା ବଦଳେଇନେ । ଆଜି ତୁ ତ ଗାଧୋଇ ନଥିବୁ ?

(ସୀତା ନୀରବରେ ଟଙ୍କା ବଢ଼େଇଦେଲା । ମଣି ଗ୍ରହଣ-କଲା । ଏତିକିବେଳେ ପ୍ରବେଶକଲା ମଧୁ, ହାତରେ ସିନ୍ଦୂର-ଫରୁଆ । ଆସିଲା ସବିତାଙ୍କ ପାଖକୁ— )

ସବିତା—ଆ ମା ଆ, ନେଲୁ ! ଠାକୁରଙ୍କ ପାଦୁକ ଧରି ମୁଁ ଛୁଆ ହେଇଛି ।

ମଧୁ—ମୁଁ ତ ତଳକୁ ଯାଇଥାନ୍ତି, ଆପଣ ମିଛରେ କଷ୍ଟ କରି ସିଢ଼ିଚଢ଼ି ଆସିଲେ କାହିଁକି ?

ସବିତା—ଠାକୁରଘରୁ ବାହାରି ଶୁଣିଲି ସୀତା ଆସିଛି ବୋଲି; ସେଇଥି ଲାଗି ନେ…

( ମଧୁ ହାତପାତି ପାଦୁକ ନେଲା, ସେବାକରି ମୁଣ୍ଡରେ ହାତବୋଳିଲା, ଏତିକିବେଳେ ଆସିଛି ଶୁଭ )

ଶୁଭ—ବୋଉ ବୋଉ, ରହ ରହ; ପାଦଧୂଳି ଦେ' ଜନନୀ ! ମା, କଳିଜାଟା ଥଣ୍ଡା ହେଇଗଲା । ଆଜି ପବିତ୍ର ହୋଇଗଲି, ପୁନର୍ଜନ୍ମ ପାଇଗଲି; ଆଃ ।

(ବାରମ୍ବାର ପାଦଧୂଳି ନେଉଥାଏ )

ସବିତା—ହେଲା ବାବା ହେଲା । ତୋ'ର ମତିଗତି ଫେରିବ, ତୁ ପୁଣି ଆଗଭଳି ଏଇ କୋଳକୁ ଧାଇଁଆସିବୁ…କେତେ ଆଶା କରି ମୁଁ ଘୁହିଁ ବସିଛି—

ଶୁଭ—ବାବାରେ ! ଏତେଗୁଡ଼ା **female** କ'ଣ ଏଠି ? ଯା' ଦେବୀ ସର୍ବଭୂତେଷୁ, ମାତୃରୂପେଣ ସଂସ୍ଥିତା; ଯା' ଦେବୀ ସର୍ବ ଭୂତେଷୁ ଜାୟାରୂପେଣ ସଂସ୍ଥିତା । ଆରେ ମୋ କନିଆଁଟା ଏଇଠି ଛୁଆହେଇଛି, ମତେ କେହି ଟିକିଏ କହି ଦଉନାହାନ୍ତି ?

ମଧୁ—ହଉ ତୁମେ ଆସିଲ, ଆସିଲ ମୋ ସାଙ୍ଗରେ ।

(ହାତ ଧରି ନେଇ ଯାଉଥିଲା)

ଶୁଭ—ଚାଲ ଚାଲ; ବୁଝିଲୁନା କନିଆଁ, ତୁ ପାଖରେ ଥିଲେ ମତେ କାହିଁକି ଘର ଭଲ ଲାଗୁଚି । ମତେ ଗୀତ ଶୁଣାଇବୁ ନା ? ମୁଁ ଗୋଟେ ନାଚ ଶିଖିଚି—ଦେଖିବୁ, ଦେଖିବୁ ।

ମଧୁ—ନାଇ-ନାଇଁ, ସମସ୍ତଙ୍କ ଆଗରେ ନାଚନ୍ତି କି ? ଘରକୁ ଚାଲ; ସେଇଠି ନାଚିବ । ଆସ— (ଦୁହେଁ ପ୍ରସ୍ଥାନ)

ସବିତା—(ଦୀର୍ଘନିଶ୍ୱାସ ଛାଡ଼ି) ମୋ କପାଳରେ ପୁଣି ଯୁ'ା' ଦେଖିବାକୁ ଥିଲା ? ହଉ ସୀତା ମା' ! ଆସିଲୁ, ସକାଳୁ ବଛଣା ଛାଡ଼ି ଚାଲିଆସିଚୁ । ଟିକିଏ ଜଳଖିଆ ଟି' ଖାଇବୁ ଚାଲ । ମଣି ତୁ ଗଲୁ, ଶୁଭ ଲାଗି ଜଳଖିଆ ପଠେଇଦବୁ । ସୀତା ମା' ! ଆସିଲୁ, ଆ— (ସବିତା ଓ ମଣି ପ୍ରସ୍ଥାନ—ସୀତା କିଛିକ୍ଷଣ ଛିଡ଼ା ହୋଇରହିଲା—ଭିତରୁ ଭସିଆସିଲା ହସର ଲହରୀ; ସେ ଯେପରି ବ୍ୟସ୍ତ ହୋଇ ଚାଲିଗଲା—)

ଅନ୍ଧାର

—  ——

## ଷଷ୍ଠ ଦୃଶ୍ୟ

[ ରାସ୍ତା । ଦିନ; ବେଲୁନ୍ ପିନ୍ଧିଛି ଗେରୁଆ ଆଲଖାଲ୍ଲ ଓ ଗେରୁଆ ଧୋତି । ମୁହଁରେ ଘନ ଦାଢ଼ି, ମୁଣ୍ଡରେ ଗେରୁଆ ପଗଡ଼ି, କପାଳରେ ଚନ୍ଦନ । ସେ ବସିଛି ଆସନ ପକାଇ ରାସ୍ତା କଡ଼ରେ, ଆଗରେ ପୋଥି ବନ୍ଧ ଦେଢେ ଖଣ୍ଡ ଦୁଇପାଖରେ ଦୁଇଟି ହାତ ଟେକ୍ସ -ବୋର୍ଡ଼୍— ଗୋଟିକରେ ହସ୍ତରେଖା ଚିତ୍ର, ଅନ୍ୟଟିରେ ଲେଖାଅଛି ଭଗ୍ୟ କପାଳ କୋଷ୍ଠି ବିଚାର । ]

[ ଦୁଗ୍ଗ ଆସି ହାତ ଦେଖାଇ ବସିଲା ]

ଦୁଗ୍ଗ—ଅବଧାନେ, ମୁଁ ଯାହା ଖୋଜୁଛି ପାଇବକି ନାହିଁ କହିଲ ?

ବେଲୁନ୍—(ଚମକି ପଡ଼ିଲା ପରି ହୋଇ) ହଁ, ତୁମେ ଧାତୁଦ୍ରବ୍ୟ ନେଇ କାମ କର । ମାନେ ଏଇ ଲୁହା, ଇସ୍ପାତ୍, କଲକବ୍ଜା ।

ଦୁଗ୍ଗ—ହଁ, ଠିକ୍ କହୁଛ ।

ବେଲୁନ୍—ତୁମର ଧାର କରଜ ଅଛି ।

ଦୁଗ୍ଗ—ନାଇଁ ତ ! ମୁଁ ଧାର କରଜ କାହାଠୁ କରିବି ?

ବେଲୁନ୍—ଟିକିଏ ଭଲକରି ମନେ ପକାଅ । ଧାର କରଜ ମାନେ ପାଞ୍ଚଶ ହଜାର ନ ହୋଇପାରେ, ପାଞ୍ଚ ପଚାଶ ତ ହୋଇପାରେ; ମନେ ହେଉଛି, ତୁମ ନିଜର ଅତି ଜଣାଶୁଣା ଲୋକ ପାଖରୁ ତୁମେ ଧାର କରିଛ ।

ଦୁଗ୍ଗ—ହଁ, ସେଇ ଚନାଚୁର୍‌ବାଲା ବେଲୁନ୍‌ର କେଇଟା ଟଙ୍କା ବାକି ଥିଲା ।

ବେଲୁନ୍—ଦେଖିଲ, ମୋର ଗଣନା କେବେହେଲେ ଭୁଲ୍ ହବନି ।

ଦୁଗ—ହଉ ହଉ; ମୁଁ ଯାହାକୁ ଆଜକ ମାସେ ହେଲ ଖୋଜୁଚ,
ତାକୁ ପାଇବ କ ନାହିଁ କହିଲ ?

ବେଲୁନ୍—ହଉ, ଦ'ଟା ଟଙ୍କା କାଢ଼ ।

ଦୁଗ—ଦ'ଟଙ୍କା କ'ଣ ? ପଦେ କଥା କହିବାକୁ ଦ'ଟଙ୍କା ।
କଳାବଜାର ବହୁତ ପ୍ରକାର ଦେଖିଥିଲ, ହେଲେ କଥାରେ
କଳାବଜାର ଏଇ ପ୍ରଥମ ଦେଖିଲ । ନଅ ନଅ, ଆଠଅଣା ଧର ।

ବେଲୁନ୍—ଆରେ ପୁଅ, ଇଏ କ'ଣ ଠକ କର ପଇସାନବା କଥା
ହେଉଚକ ? ଭବିଷ୍ୟତ ତ୍ରିକାଳ ଦର୍ଶନ ସାମୁଦ୍ରିକ ବିଦ୍ୟା;
ଇଏ କ'ଣ ମଟର କ୍ଲିନର୍ କାମ ହେଇଚ ?

ଦୁଗ—ହେଃ, ଭାର ବଡ଼ ବଡ଼ କଥା କହୁଚ ହେ ! ମଟର କ୍ଲିନର
କ'ଣ ? ଏଁ ? ମଟର କ୍ଲିନର କ'ଣ ? ମୁଁ ମଟର ମେକାନିକ୍ ।

ବେଲୁନ୍—ହଁ ହେ ! କ୍ଲିନର କଏ, ମେକାନିକ୍ କଏ, ସେକଥା
କ'ଣ ମତେ ଜଣାନାହିଁ ? ଏବେ ଖଣ୍ଡେ ଯାନବାହନ କଣିଚ,
ବୋଧହୁଏ ଟ୍ରକ୍ ଖଣ୍ଡେ ହବ ।

ଦୁଗ—ହଇ ହେ, ତମେ କମିତ ଜାଣିଲ ?

ବେଲୁନ୍—ତୁମ ହାତରୁ । ବୁଝିଲ, ତୁମେ ସିନା ବିଶ୍ୱାସ କରୁନ
ବୋଲ ଧନ କାଢ଼ୁନ; ହେଲେ ସବୁକଥା ତୁମ ହାତରୁ
ବାହାରିବ । ମଣିଷ ଯାହା କରେ, ଯାହା କରିବାକୁ ବସିରେ
ସବୁକଥା ତା'ର ହାତରେ ଅଙ୍କାଥାଏ ପରା !

ଦୁଗ—ହଉ ହଉ, ନଅ ଧର ଦ'ଟଙ୍କା । କହିଲ, କ'ଣ ସବୁ ଅଛୁ
ମୋ ହାତରେ ? ଯାହାକୁ ମୁଁ ଖୋଜୁଚ ତାକୁ ପାଇବ କ
ନାହିଁ ଦେଖିଲ ?

(ଦୁଗ ଟଙ୍କା ଦେଲ, ବେଲୁନ୍ ଅଣ୍ଟାରେ ମାର ହାତ ଦେଖିଲ)

ବେଲୁନ୍—ଉଁ, ଉଁ ହୁଁ, ( ଗଣି ଗଣି ) ତୁମ୍ଭେ ଜଣେ ସ୍ତ୍ରୀ ଲୋକଙ୍କୁ ଖୋଜୁଚ । ହୁଁ ପ୍ରାପ୍ତି ଯୋଗ ତ ଅଛି । ହଁ, ପାଇବନି କାହିଁକି ? ଖୋଜାଲୋଡ଼ା କଲେ, ଠିକ୍ ଜାଗାରେ ଖବର ନେଲେ, ଖୋସାମତ ମରାମତି କଲେ ପାଇଯିବ ।

ଦୁଗ୍—ପାଇଯିବ ? ଜୟ ଗୁରୁଜୀଙ୍କର ଜୟ ! କୋଉଁଠି ପାଇବ ଗୁରୁଜୀ ? କେବେ ପାଇବ ? କିଏ ଜାଣିଚି ତା' ଖବର ?

ବେଲୁନ୍—ଜଣେ କଳା ଲୋକ ତୁମକୁ ସାହାଯ୍ୟ କରିପାରେ ।

ଦୁଗ୍—କଳା ଲୋକ ?

ବେଲୁନ୍—କ୍ଷୀଣକାୟ, କଳା ଲୋକ, ତୁମର ବନ୍ଧୁ କେହି—

ଦୁଗ୍—ବେଲୁନ୍; ବୁଝିଲି ଗୁରୁ ! ବେଲୁନ୍ ମୋର ସାଙ୍ଗ । କାଳିଆ ଧେଡ଼େଙ୍ଗା—ସେଇ ବଳଦ ଘିକୁଡ଼ା ଜାଣିଚି ।

ବେଲୁନ୍—ବଳଦଘିକୁଡ଼ା ? କିଏ ବଳଦଘିକୁଡ଼ା ? ତୁମର ବନ୍ଧୁ ? କ'ଣ କହିଲ ତା ନାଆଁ ?

ଦୁଗ୍—ବେଲୁନ୍ ।

ବେଲୁନ୍—ହଁ, ବେଲୁନ୍ । ବାଃ, ଭଲ ନାଆଁଟିଏ ତ । ସେଇ ବେଲୁନ୍ ତୁମଠୁ ବେଶୀ ଧୂର୍ତ୍ତ, ବେଶୀ ବୁଦ୍ଧିମାନ୍ । ତା'ର ଦେହ ପତଳା, ତା'ର ବୁଦ୍ଧି ମଧ୍ୟ ପତଳା । ତୁମର ଦେହ ମୋଟା, ତୁମର ବୁଦ୍ଧି ମଧ୍ୟ ମୋଟା । ତୁମେ ଗୋଟାଏ ହୁଣ୍ଡା, ବୋକା, ହାଉଡ଼ା ।

ଦୁଗ୍—କ'ଣ କହିଲ ?

ବେଲୁନ୍—ଗୁରୁଙ୍କ କଥାରେ ପ୍ରତିବାଦ କରନି । ଯାହା ମୁଁ କହୁଚି ହଁ କହିଯାଅ । ତେବେ ଯାଇ ସେ ଝିଅକୁ ପାଇବ ।

ଦୁଗ୍—ହଁ ଗୁରୁ ! କୁହ, କୁହ ।

ବେଲୁନ୍—ବେଲୁନ୍‌ର ଖବର ନିଅ । ତାକୁ ଖୋସାମତ ମସ୍ଗମତ କରିବ, ବୁଝିଲ ?

ଦୁସ୍—ଖୋସାମତ ?

ବେଲୁନ୍—ହଁ, ଦରକାର ହେଲେ ତା ଗୋଡ଼ ହାତ ଧରିବ । ତା'ର ବାକିଆ ପଇସା ଶୁଝିଦବ । ତା'ହେଲେ ଅବା ତାଠୁଁ ସବୁ ଖବର ପାଇପାର ।

ଦୁସ୍—ହଉ ହଉ, ଗୋଡ଼ ଧରି କଥା ଆଦାୟ କରିବ,କି ଖୁନ୍ଦାମାରି ଖୋସାମତ କରିବ ସେକଥା ଠିକ୍ ମତେ ଜଣା । ଏବେ ଟିକିଏ ବେପାର-ବଣିଜ କଥା କହିଲ ?

ବେଲୁନ୍—ସେଇଟା ତ ଅଲଗା ପ୍ରଶ୍ନ । ତା'ଲାଗି ଅଲଗା ଦକ୍ଷିଣା ଦବାକୁ ପଡ଼ିବ ।

ଦୁସ୍—କ'ଣ ହେଲା ? ଦ'ଟଙ୍କା ପରେ ପୁଣି ଆହୁରି ?

ବେଲୁନ୍—ହଁ-ହଁ, ଆହୁରି । ଖୁନ୍ଦାମାରି ଖୋସାମତ କରିବା ଲୋକକୁ ମୁଁ ଘୃଣା କରେ, ଧନ କାଢ଼ ।

ଦୁସ୍—ଆରେ ଏଇଟା ଗୋଟାଏ ପକ୍‌କା ଗୃହିଣବଣ୍ ଅଛୁ । ଖାଲି କଥା କହିବା ଲାଗି ଏତେ ଟଙ୍କା ?

ବେଲୁନ୍—ଏ ! ଗାଳିଗୁଲଜ କଲେ, ତୋ ଊର୍ଦ୍ଧ୍ୱରେଖାକୁ ବକ୍ର-ରେଖା କରିଦେବି, ଜାଣିଚୁନା ? ଗୋଟାଏ ଧଡ଼ଡ଼ ଟ୍ରକ ସେକେଣ୍ଡହାଣ୍ଡରେ କିଣିଚୁ ବୋଲି ମନେ ମନେ ନବାବ୍ ହୋଇ ଗଲୁଣି, ନାଇଁ ? ମଟର କ୍ଲିନର ହୋଇ······

ଦୁସ୍—କ୍ୟା ବୋଲା ବେ— (ଗର୍ଦ୍ଦନ ଧରିଦେଲା)

ବେଲୁନ୍—ମରିଗଲି ରେ ଦୁସିଇ ! ( ସତ୍ୟର ପ୍ରକାଶରେ ଦୁହେଁ ସ୍ତମ୍ଭୀଭୂତ ହୋଇ ପରସ୍ପରକୁ ଗୃହିଁରହିଲେ )

ଦୁସ୍—କି ବେ ବେଲୁନ୍ ! ଆରେ ଦୋସ୍ତ୍ , ତୁ ଏ ଧନ୍ଦା କ'ଣ ଧରିଲୁଣି ?

ବେଲୁନ୍—ବେପାର ତ ଆଉ ବାକିରେ ଚଳିଲାନି । ଗୃହି ଟଙ୍କାର ଗୃହିନାଚୁର ବିକି ଯଦି ଗୃହଣି ଟଙ୍କା ବାକି ରହେ, ତେବେ ଆଉ ଗୃହି କ'ଣ ? ଏମିତି ବରଂ ଭଲ ଗୃହଲଟ । ଖାଲି କଥା ବିକି ପଇସା ମିଳୁଚି । ଆଜକାଲି ତ ସଂସାର ଗୃହଲଟ ଖାଲି କଥା ଉପରେ । କହି ବୋଲି ଜାଣେ ଯିଏ, ସାରୁ ମୁଣ୍ଡା ବିକେ ସିଏ ।

ଦୁଗ୍—ହଇବେ, ଏ ବିଦ୍ୟା କେବେଠୁ ଶିଖିଲୁ ?

ବେଲୁନ୍—କି ବିଦ୍ୟା ବେ ? ଖାଲି ଠାସ୍କୁମାରି ମନଭୁଲି କଥା କହି ପାରିଲେ ହେଲା । ଭବିଷ୍ୟତରେ ଭଲହବ କି ନାହିଁ ଜାଣିବାକୁ ସମସ୍ତେ ଆସନ୍ତି; ତାଙ୍କ ମନ ବୁଝି ଦି'ଗୃହି ପଦ କହିଦେଲେ ସୁ'କେ ଆଠଣା ମିଳିଯାଏ ।

ଦୁଗ୍—ଆଉ ମୋ କଥା ଯାହା କହିଲୁ, ସେ କଥା କ'ଣ ସତ ନା ମିଛ ?

ବେଲୁନ୍—ଆଗ ମୋ ବାକିଆ ପଇସା ଦେଇପକା, ଖୋସାମତି କର, ତେବେ ଯାଇ······

ଦୁଗ୍—ଆବେ ତୁ ଜାଣୁ ଚନ୍ଦା କୋଉଠି ଅଛି ?

ବେଲୁନ୍—ଗଳି ଗଳି ବୁଲି ଚନାଚୁର ବିକଚି, ସେକଥା ଆଉ ମୁଁ ଖବର ରଖିନି ?

ଦୁଗ୍—କହ ଭାଇ କହ, କେଉଠି ଅଛି ? କମିତି ଅଛି ?

ବେଲୁନ୍—ଆଉ ତା କଥା କାହିଁକି ଭାବୁଚୁ ? ଯା' ଯା', ତା କଥା ଭୁଲି ଯା ।

ଦୁଗ୍—କ'ଣ କହିଲୁ ? ଭୁଲିଯିବି ? ସବୁ ତ ତା'ରି ଲାଗିରେ ! ଟଙ୍କା ରୋଜଗାର କରିବି, ସଲଟଣି କରି ବାହା ହେବି, ଘର-ସଂସାର କରିବି । ସେଇଥି ଲାଗି ସିନା ଏ ଟ୍ରକ୍ କିଣା

ବେପାର । ସବୁ ତ ତା'ର ଲଗି ! ଆଜ ତୁ କହୁଚୁ ମୁଁ ତା'କୁ ଭୁଲିଯିବ ? କହ ଭାଇ, କହ—

ବେଲୁନ୍—ମୁଁ ଜାଣିନ ବେ ! ଯା, ମତେ ବିରକ୍ତ କରନା; ମୋ ବେପାର ଲୋକସାନ୍ ହଉଚ ।

ଦୁବ—ଆଚ୍ଛା ବେଟା, ତୁ ଏମିତ ସହଜରେ ମାନିବୁ ନ, ନାଇଁ ? କହିବୁ ନା ନାହିଁ ?

(ଦୁବ ବେଲୁନ୍‌କୁ କାନ୍ଧରେ ପକାଇ ବ'ଡ଼ନ ଘେର ବୁଲେଇଲ )

ବେଲୁନ୍—କହୁଚ କହୁଚ, ମତେ ତଳେ ଥୋଇଦେ'......

ଦୁବ—ସେକଥା ଭୁଲିଯା; ଗୁ ରୁ ନ କହିବାଯାଏ ଏମିତ କାନ୍ଧରେ ପକେଇ ବୁଲୁଥିବ । ଜୟ ବଜ୍ରଙ୍ଗବଳି !

(ବେଲୁନ୍‌କୁ କାନ୍ଧରେ ନଚେଇ ନଚେଇ ଧାଇଁ ଧାଇଁ ଗୁଲିଗଲ । ବେଲୁନ୍ ଝକଳରେ ପାଟି କରୁଥାଏ )

—ଅନ୍ଧାର—

———

# —ସପ୍ତମ ଦୃଶ୍ୟ—

[ ଦୋତାଳ ଘରର ଛାତ, ରାତି ଆକାଶରେ ଅଗଣିତ ତାରକାର ସଭା । ଦୂର କୋଠାଗୁଡ଼ିକର ଝରକା ଦେଇ ଆଲୁଅ ଦେଖାଯାଉଥାଏ । ଶୁଭର ଛାତଉପରେ ଦୀପାବଳୀର ସଜ୍ଜା । ଛାତ ମଝିରେ ଖଟ, ଗଦି, ତକିଆ, ଏକ ସ୍ୱପ୍ନିଳ ପରିବେଶ । ସେଇ ପରିବେଶ ମଧ୍ୟରେ ଏକ ମନମୁଗ୍ଧକାରୀ ବେଶରେ ନାଚୁଥାଏ ଚନ୍ଦ୍ରିକା । ଶୁଭ ନାଚ ଦେଖେ, ଆନନ୍ଦିତ ହୁଏ; ପୁଣି ଅନ୍ୟମନସ୍କ ହୋଇ ଆକାଶକୁ ଚାହେଁ । ତାକୁ ଚନ୍ଦ୍ରିକା ଟାଣିଓଟାରି ନିଜପ୍ରତି ଆକୃଷ୍ଟ କରେ । ]

ଶୁଭ୍—ଆରେ ନାଚ ବନ୍ଦ କରିଦେଲ କାହିଁକି ?

ଚନ୍ଦ୍ରିକା—ତୁମ ଆଗରେ ନାଚିବା ଯାହା, କାନ୍ଥବାଡ଼ ଆଗରେ ନାଚିବା ସେଇଆ ।

ଶୁଭ—କାହିଁକି ? ମୁଁ କ'ଣ କାନ୍ଥ ?

ଚନ୍ଦ୍ରିକା—ହଁ ।

ଶୁଭ—କାନ୍ଥ, ମୁଁ କାନ୍ଥ; ଇଟା ବାଲି ସିମେଣ୍ଟଠାରୁ ମୁଁ କଠିନ, ନିର୍ମମ । ସିମେଣ୍ଟ କଳାପୋଟେଇ ଚାଲିଚି, ଚାଲୁ ଚାଲୁ; ଲୋକଙ୍କ ହାତରେ ପଇସା ନଥିଲେ କଳାବଜାର ଚାଲନ୍ତା କିମିତି ? ଅତଏବ ଲୋକଙ୍କ ହାତରେ ପଇସା ଯଥେଷ୍ଟ ଅଛି—Inflation, ମୁଦ୍ରାସ୍ଫିତି !

(ଚୁପ୍‌ହୋଇ ଛିଡ଼ାହେଲା । ଚନ୍ଦ୍ରିକା ତା' ପାଖକୁ ଗଲା)

ଚନ୍ଦ୍ରିକା—ଚୁପ୍ ହୋଇଗଲ ଯେ ?

ଶୁଭ—ମୁଁ କାନ୍ଥ । ସ୍ଥିର, ନୀରବ ଦର୍ଶକ । ଓଃ—

ଚନ୍ଦ୍ରିକା—କ'ଣ ହେଲା ?

ଶୁଭ—ମୋ ମୁଣ୍ଡ ଉପରେ ଯୋଉ ଘୁଡଟା ଲଦି ଦେଇଚନ୍ତି, ତଳେଇ ଘୁଡ, R. C. ଗଳେଇ, ଘର ଓଜନ ! କେତେ ଦିନ ଏ ଘୁଡକୁ ମୁଣ୍ଡେଇ ଥିବ ? ହେଃ ହେଃ, ଯୋଉଦିନ କାନ୍ଥ ମୁଣ୍ଡ ହଲେଇ ଦବ, ସେଦିନ ଘୁଡ ଭୂଷୁଡ଼ି ପଡ଼ିବ । ଦେଖିବ, ଦେଖିବ ? ମୁଣ୍ଡ ହଲେଇଦେବି ଦେଖିବ ? (ଉପରକୁ ଚାହିଁଲା)

ଚନ୍ଦ୍ରିକା—ମଣିଷ ମନରେ କଷ୍ଟ ହେଲେ ସେ କ'ଣ କରେ ଜାଣ ?

ଶୁଭ—କାନ୍ଥ ସ୍ଥିର, ନୀରବ ।

ଚନ୍ଦ୍ରିକା—ସେ କାନ୍ଥରେ ଢୁ ଢୁ କରି ମୁଣ୍ଡ ପିଟେ । ମୁଁ ଯଦି କାନ୍ଥରେ ମୁଣ୍ଡ ପିଟିଦିଏ କ'ଣ ହବ ?

ଶୁଭ—କାନ୍ଥ ନୀରବ ଅନୁଭବୀ, ଦୃଢ଼ ନୀରବ ।

ଚନ୍ଦ୍ରିକା—ତୁମେ ନିର୍ଦ୍ଦୟ, ନିଷ୍ଠୁର ! ତୁମର ହୃଦୟ ନାହିଁ; ତୁମେ ପାଷାଣ !

(ଚନ୍ଦ୍ରିକା ଶୁଭର ଛାତିରେ ମୁଣ୍ଡ ପିଟିଲା । ଶୁଭ ବାହୁ ମଧ୍ୟରେ ଧରିନେଲା ଚନ୍ଦ୍ରିକାକୁ କିଛିକ୍ଷଣ ପାଇଁ । ଦୁହେଁ ହଜି-ଗଲେ ପରସ୍ପର ମଧ୍ୟରେ । ତା'ପରେ···)

ଚନ୍ଦ୍ରିକା—ଆଃଗୋ ! ତୁମେ କ'ଣ ମତେ ଗ୍ରହଣ କରିବ ନି ? ମତେ କ'ଣ ଏଇ ବୁକୁତଳେ ସ୍ଥାନ ଦବନି ସବୁଦିନ ଲାଗି ?

ଶୁଭ—ମୁଁ ତୁମକୁ ବାହା ହେଇଚି; ତୁମେ ମୋର କନିଆଁ ।

ଚନ୍ଦ୍ରିକା—ହିଁ ହିଁ, ମୁଁ ତୁମର କନିଆଁ—ତୁମେ ମୋର ବର; ମୋର ସ୍ୱାମୀ । ହାତଧରି ମତେ ବାହାହେଇଚ, ନର୍କରୁ ଟାଣି ଆଣିଚ ଏଇ ସ୍ୱର୍ଗକୁ । ମାତ୍ର ତୁମର ଭଲପାଇବା ଦେଇ କ'ଣ ମତେ ନିଜର କରିନବ ନି ? ମତେ କ'ଣ ପୁନର୍ଜୀବନ ଦବ ନି ତୁମେ ?

ଶୁଭ—ପୁନର୍ଜୀବନ, ସ୍ୱର୍ଗ, ନର୍କ ! ଓଃ ! କନିଆଁ, ମୋ ମୁଣ୍ଡ, ମୋ ମୁଣ୍ଡ ! (ମୁଣ୍ଡଧରି ବସିପଡ଼ିଲା)

ଚନ୍ଦ୍ରିକା—କ'ଣ ହେଲା, କ'ଣ ହେଲା ତୁମର ?

ଶୁଭ—ମୋ ମୁଣ୍ଡ ଭିତରେ ଗୋଟାଏ ରେଲଗାଡ଼ି ଚାଲିଯାଉଛି—ଓଃ କନିଆଁ, କନିଆଁ ! ବଡ଼ କଷ୍ଟ, ଭୀଷଣ ଯନ୍ତ୍ରଣା; ମୋ ମୁଣ୍ଡଟାକୁ ଚେପିଦିଅ, ଚୂନା କରିଦିଅ । ଓଃ ! (ମୁଣ୍ଡ ବାଡ଼େଇବାକୁ ଆରମ୍ଭ କଲାବେଳେ ଚନ୍ଦ୍ରିକା ବାଧାଦେଇ ନିଜ କୋଳରେ ଚାପି ଧରିଲା)

ଚନ୍ଦ୍ରିକା—ପ୍ରେ' କ'ଣ କହୁଛ ? କ'ଣ ହେଲା ତୁମର ? ମୁଁ ଡାକ୍ତର ଡାକିଆଣେ ।

ଶୁଭ—ନା ନା, ତୁମେ ଯାଅନି; ମତେ ଛାଡ଼ି ଯାଅନି ତୁମେ । ତୁମ-ଛଡ଼ା ମୋର କେହି ବନ୍ଧୁ ନାହାଁନ୍ତି । ସମସ୍ତେ ଶତ୍ରୁ, ସ୍ୱାର୍ଥପର—**Selfish beasts** । ତୁମେ ଯାଅନି, ମତେ ଏକା ଛାଡ଼ି ଯାଅନି ତୁମେ । (ଶୁଭର ବ୍ୟସ୍ତତା କମିଗଲା—ସେଇପରି ଚନ୍ଦ୍ରିକା କୋଳରେ ମଥା ରଖି ଶୋଇରହିଲା । ଶୁଭର ମୁଣ୍ଡରେ ହାତ ବୁଲାଉ ବୁଲାଉ ଚନ୍ଦ୍ରିକା ଆଖିରୁ ଝର ଝର ଲୁହ ବହୁଥିଲା, କିଛିକ୍ଷଣ ପରେ ଶୁଭ ଚମକିକରି ଉଠିଲା—)

ଶୁଭ—କନିଆଁ ! କନିଆଁ—

ଚନ୍ଦ୍ରିକା—ମୋ ନା ମଧୁ, କନିଆଁ ନୁହେ ।

ଶୁଭ—ମଧୁ ! ବାହା ? ମଧୁଲଟ, ମଧୁମକ୍ଷିକା, ମଧୁ ଚନ୍ଦ୍ରିକା ?

ଚନ୍ଦ୍ରିକା—ଚନ୍ଦ୍ରିକା ? (ଚମକିପଡ଼ି) ନା ନା, ମୁଁ ଚନ୍ଦ୍ରିକା ନୁହେଁ, ମୁଁ ଚନ୍ଦ୍ରିକା ନୁହେଁ । ମୁଁ ଖାଲି ମଧୁ, ମଧୁମୁଖୀ ।

ଶୁଭ—ମଧୁମୁଖୀ ? ମାନେ ଓଡ଼ିଶାର ମଧୁ, ମୁହେଁ ତୁମ ମଧୁ ?

ଚନ୍ଦ୍ରକା—କାହିଁକି ? ବିଶ୍ୱାସ ହଉନି ନା କ'ଣ ? ପରୀକ୍ଷା କରି ଦେଖିଲେ ତ ସନ୍ଦେହ ମୋଚନ ହୁଅନ୍ତା ।

ଶୁଭ—ଆସ ତେବେ ପରୀକ୍ଷା କରି ଦେଖିବା । (ଆକର୍ଷଣ କଲା)

ଚନ୍ଦ୍ରକା—ଆରେ-ଛି, ଖୋଲ ଛୁଡଟାରେ···ଅତି ଫାଜିଲ୍ ତୁମେ ।

ଶୁଭ—କନିଆଁ ।

ଚନ୍ଦ୍ରକା—ଉ-ହୁଁ ; ମଧୁ—ହାଃ-ହାଃ-ହାଃ- ।

(ଦଉଡ଼ି ଚାଲିଗଲା ଘରଭିତରକୁ, ଶୁଭ ତା' ପଛ ଅନୁସରଣ କଲା । ଘରଭିତରୁ ଭାସିଆସୁଥିଲା ହସ । ପ୍ରବେଶ କଲା ଗୀତା, ହସ ଶୁଣି ଛିଡ଼ା ହୋଇ ଚାହିଁଲା । ଗୀତା ଆଗେଇ ଯାଉଥିଲା ଦ୍ୱାର ପର୍ଯ୍ୟନ୍ତ । ହଠାତ୍ ଛିଡ଼ା ହୋଇଗଲା । ତା' ପରେ ବ୍ୟସ୍ତ ଓ ବେଗରେ ଫେରି ଯାଉଥିଲା । ମାତ୍ର କାହାକୁ ଆସୁଥିବାର ଦେଖି ସେ ଫେରିଆସି ଆତ୍ମଗୋପନ କଲା । ପାଣିଟାଙ୍କି ପଛରେ ପ୍ରବେଶ କଲେ ଦେବ । ସେ ଚାରି ଆଡ଼କୁ ଚାହିଁଲେ, ଅନ୍ଧାର । ଦ୍ୱାରକୁ ଦେଖି ସେ ଅପେକ୍ଷା କରିବେ କି ନାହିଁ ଭାବିଲେ—ପ୍ରବେଶକଲା ଚନ୍ଦ୍ରା । ଦେବଙ୍କୁ ଦେଖି—)

ଚନ୍ଦ୍ରକା—ଆରେ ବାବୁ, ଆପଣ କେତେବେଳୁ ଆସିଲେଣି ?

ଦେବ—ଏଇ ସାଙ୍ଗେ ସାଙ୍ଗେ ଆସୁଛି । କ'ଣ ଶୋଇଥିଲୁ ନା କ'ଣ ?

ଚନ୍ଦ୍ରିକା—ନା ଶୁଆଉଥିଲି (ମୁହଁରେ ଅଳପ ହସ)

ଦେବ—ଶୁଭ କ'ଣ ଶୋଇପଡ଼ିଛି ?

ଚନ୍ଦ୍ରିକା—ହଁ; ଆଜି ମୋ କାମ ପସନ୍ଦ ହଉଛି ତ ?

ଦେବ—ନା—

ଚନ୍ଦ୍ରକା—ନା ? କାହିଁକି, କୋଉଠି ମୋର ଗଫିଲତି ଦେଖିଲେ ? ମୋର ଆସିବାର ମାସକରୁ କିଛି ବେଶି ହେବ ମାତ୍ର; ଯା' ଭିତରେ ଘରର ପ୍ରତ୍ୟେକ ଲୋକଙ୍କୁ ତ ମୁଁ ଜୟ କରି ସାରିଲିଣି ।

ଦେବ—ସେଇ କଥାଟାହିଁ ମୁଁ ପସନ୍ଦ କରିପାରୁନି । ତତେ ମୁଁ ଆଣିଥିଲି ଶୁଭ୍ରର ଚିକିତ୍ସା ପାଇଁ । ମାତ୍ର ଏପରି ଭାବରେ ତୋର ଆସନ ମଜବୁତ୍ କରିବା ତ ମୋର ଉଦ୍ଦେଶ୍ୟ ନଥିଲା । ତୁ ଆସିଥିଲୁ ସେବିକା ଭାବରେ, ଅଭିନେତ୍ରୀ ଭାବରେ; ଅଭିନୟକୁ ପ୍ରକୃତିରେ ପରିଣତ କରିବାର ପ୍ରୟାସ କଲେ ଫଳାଫଳ ଯେ ପ୍ରୀତିକର ହବନି, ସେ କଥା ମୁଁ ଆଗରୁ କହି ରଖିଛି ତତେ । ସାବଧାନ କରି ଦେଲେ ମଧ ତୁ ଏ ଭୁଲ କରିବାକୁ ଗଲୁ କୋଉ ସାହସରେ ?

ଚନ୍ଦ୍ରିକା—ଭୁଲ ?

ଦେବ—ନୁହେଁ ? ଶୁଭ୍ରର ବୋଉ ବିଧବା, ହିନ୍ଦୁ ବ୍ରାହ୍ମଣ ଘରର ବିଧବା । ନୀତି, ନିୟମ, ନିଷ୍ଠା ମାନି ସେ ଚଳନ୍ତି । ପୂଜାବ୍ରତ ଛୁଆଁ ଅଛୁଆଁ ପ୍ରତି ସାବଧାନ ଥା'ନ୍ତି । ମାତ୍ର ସବୁ ଜାଣିଶୁଣି ତୁ ତାଙ୍କୁ ବିଶ୍ୱାସରେ ବିଷ ଦେଇଚୁ । ତାଙ୍କ ଧର୍ମକର୍ମ, ପୂଜା ବ୍ରତକୁ ତୁ ବିଫଳ କରିଚୁ । ଯେଉଁଦିନ ସେ ଜାଣିବେ ଗୋଟାଏ ଅସ୍ପୃଶ୍ୟ ବେଶ୍ୟା ତାଙ୍କ ଠାକୁର ଘରେ ପଶି ପୂଜା କରିଚି, ତାଙ୍କ ହାତରୁ ପାଦୁକ ପାଇଚି, ସିନ୍ଦୂର ପିନ୍ଧିଚି···

ଚନ୍ଦ୍ରିକା—ଅସ୍ପୃଶ୍ୟ, ବେଶ୍ୟା ! ଏତେ ଯଦି ଘୃଣା, ଟଙ୍କା ମାଡି ଘରକୁ ଡାକି ଆଣିଥିଲେ କାହିଁକି ? ବେର୍ଦୀରେ ବସେଇ ମନ୍ତ୍ର ପଢ଼ି ଟୋଳା-କନ୍ୟା ଭାବରେ ମନେ ଘରର ବୋହୂ କରି ନେଇ ଆସିଥିଲେ କାହିଁକି ?

ଦେବ—ସେ ସବୁଥିଲା ଲୋକଦେଖାଣିଆ ଅଭିନୟ । ବେଦ, ମନ୍ତ୍ର, ପୁରୋହିତଦ୍ୱାରା ଧର୍ମର ପର୍ଦ୍ଦା ନ ଦେଇଥିଲେ, ତୋ ଭଳି ଗୋଟାଏ ନାଚବାଲୀ କ'ଣ ସମ୍ଭ୍ରାନ୍ତ ବଂଶର କୁଳବୋହୂର ଅଭିନୟ କରି ପାରିଥାନ୍ତା ?

ଚନ୍ଦ୍ରିକା—ଦେବ ବାବୁ ! (ଚିତ୍କାର କରି) ମତେ ବେଶ୍ୟା, ନାଚବାଲୀ କହି ଆପଣ ନିଜର ଆଭିଜାତ୍ୟକୁ ଖୁବ୍ ଉପରକୁ ଉଠେଇ ନେଇ ପାରିଚନ୍ତି ନା ? ମାତ୍ର ଆପଣ ଭୁଲି ଯାଉଚନ୍ତି କାହିଁକି, ଏବେ ମଧ୍ୟ ଆପଣଙ୍କ ଏ ସମ୍ଭ୍ରାନ୍ତ ପରିବାର ଏଇ ଅସ୍ପୃଶ୍ୟ ପତିତାର ଅନୁଗ୍ରହ ଉପରେ ନିର୍ଭର କରେ । ଆପଣଙ୍କ ସମ୍ଭ୍ରାନ୍ତ ସମାଜର ଝିଅମାନେ ଯେତେବେଳେ ଗୋଟାଏ ପାଗଳର ସେବା କରିବାକୁ ବିମୁଖ ହେଲେ, ସେତେବେଳେ ଏଇ ଅଛୁଆଁ ନାଚନେବାଲୀ ନିଜ ଜୀବନକୁ ବିପନ୍ନ କରି ଆଗେଇ ଆସିଥିଲା, ଗୋଟାଏ ପାଗଳ ହାତରେ ନିଜକୁ ଉତ୍ସର୍ଗ କରିଦବାକୁ । ତ୍ୟାଗ କିଏ କରିଚି ଦେବ ବାବୁ ? ଆପଣଙ୍କର ଏଇ ଗୁରୁ ଅହଙ୍କାର, ନା ମୋର ଏଇ ହୀନ ଉଦାରତା ?

ଦେବ—ମୁଁ ଟଙ୍କା ଦେଇ ମୁକ୍ତ କରିବାକୁ ଆସିନି ଚନ୍ଦ୍ରିକା ! ମୁଁ ଆସିଚି ଆଦେଶ ଦେବାଲାଗି । ମୁଁ ତୋର ମା'କୁ ମାସକୁ ଦେଢ଼ ହଜାର କରି ଟଙ୍କା ଦଉଚି । ମୋର ସେଇ ଅନୁପାତରେ କାମ ଦରକାର ।

ଚନ୍ଦ୍ରିକା—ଓଃ ! ଆଭିଜାତ୍ୟ ପରେ ଆସିଲା ଟଙ୍କାର ଅହଙ୍କାର ! ବାଃ, ଆମକୁ ଜବତ୍ କରିବାଲାଗି କେତେ ପ୍ରକାର ଅସ୍ତ୍ର ନ ରଖିଛନ୍ତି ଆପଣମାନେ ?

ଦେବ—ଟଙ୍କା ଯିଏ ଦିଏ ହୁକୁମ ଦେବାର ଅଧିକାର ତାର ଥାଏ ।

ଚନ୍ଦ୍ରିକା—ମୁଁ ଯଦି ଆପଣଙ୍କ ଟଙ୍କା ଗ୍ରହଣ ନ କରେ, ତେବେ ?

ଦେବ—ମାନେ ?

ଚନ୍ଦ୍ରିକା—ଆପଣ ଦେଢ଼ ହଜାର ଟଙ୍କା ଦେଇଥିଲେ । ମୁଁ ମାସେ କାମ କରି ଦେଇଛି । ଏଣିକି ମୁଁ ଆପଣଙ୍କ ଟଙ୍କା ନେବାକୁ ଚାହେଁନି, କି କାମ କରିବାକୁ ମଧ୍ୟ ପ୍ରସ୍ତୁତ ନୁହେଁ ।

ଦେବ—ଚନ୍ଦ୍ରିକା !

ଚନ୍ଦ୍ରିକା—ଆପଣଙ୍କର ଟଙ୍କାର ଅହଙ୍କାର ଅଛି ତ ମୋର ମଧ୍ୟ କାର୍ଯ୍ୟ ଦକ୍ଷତାର ଗର୍ବ ଅଛି । ଆପଣ ଅନ୍ୟ କାହାକୁ ଟଙ୍କା ଦେଇ କାମ କରିବାପାଇଁ ଠିକ୍ କରି ନିଅନ୍ତୁ । ମୁଁ ଆଜି ଏଇ ମୁହୂର୍ତ୍ତରୁ ବିଦାୟ ନେଇ ଯାଉଛି ।

ଦେବ—ଓଃ, ସୁବିଧା ଦେଖି ତୁ ନିଜର ଦର ବଢ଼େଇବାକୁ ଚାହୁଁଛୁ ? ଆଉ କିଛି ଅଧିକା ଟଙ୍କା ଦରକାର, ନା ?

ଚନ୍ଦ୍ରିକା—ଟଙ୍କା ଦେଇ ସବୁ ଜିନିଷ ତଉଲିହେବନି ଦେବବାବୁ ! ଟଙ୍କାଟା ବଞ୍ଚିବାଲାଗି ସାହାଯ୍ୟ କରେ ସତ; ମାତ୍ର ସେଇଟା ତ ଜୀବନ ନୁହେଁ । ମୁଁ କାମ କରେ ଟଙ୍କା ପାଇଁ, ସେ କଥା ମୁଁ ମାନୁଛି । ମାତ୍ର ମୁଁ ପ୍ରାଣହୀନ ମାଂସ ପିଣ୍ଡୁଳା ନୁହେଁ ଦେବବାବୁ ! ସ୍ତ୍ରୀ ଭବରେ ଜନ୍ମ ନେଇଛି ଯେତେବେଳେ, ମୋର କ'ଣ ସଂସାର ଗଢ଼ିବାର ସ୍ୱପ୍ନ ନାହିଁ ?

ଦେବ—କିନ୍ତୁ ତୋର ସ୍ୱପ୍ନର ସାର୍ଥକତା ପାଇଁ ମୁଁ ତତେ ଏଠିକି ଆଣିନଥିଲି । ତୋ ସହିତ ମୋର ଭିନ୍ନ ପ୍ରକାର ଜବାବ ଥିଲା ।

ଚନ୍ଦ୍ରିକା—ତା' ମୋର ମନେଅଛି ଦେବବାବୁ ! ମୋର କାମ ମୁଁ ଠିକ୍ କରୁଛି, ଆଉ କରିଯିବି । ନିଶ୍ଚିନ୍ତ ମନରେ ଆପଣ ଯା'ନ୍ତୁ ।

ଦେବ—ଏ ମାସର ଟଙ୍କାଟା ?

ଚନ୍ଦ୍ରିକା—ମା' ପାଖକୁ ପଠେଇ ଦେବେ । ମତେ ପଚାରିବା ଲାଭ କ'ଣ ?

ଦେବ—ବେଶ୍, ମୁଁ ଯାଉଚି ତେବେ । ଦେଖ୍ ଚନ୍ଦ୍ରା ! ମତେ ଭୁଲ୍ ବୁଝିବୁ ନାହିଁ; ତୋର ମଙ୍ଗଳ ପାଇଁ ମୁଁ ତତେ ସାବଧାନ କରିଦବାକୁ ଆସିଥିଲି । ଚୁକ୍ତିର ଖିଲାପ ହେଲେ ସବୁଠୁ ବେଶି କଷ୍ଟ ପାଇବୁ ତୁ ।

ଚନ୍ଦ୍ରିକା—ଦେବବାବୁ ! ଏଇ ମାଟିରେ ଘାସଫୁଲ ବି ଫୁଟେ, ଆଉ ମଲ୍ଲି,ଗୋଲାପ ବି ଫୁଟେ । ଶରୀର ମାଳି ହେଲେ, ଠିକ୍ ଶରି, ବୁଦ୍ଧି କାମରେ ଲଗାଇ ପାରେ ।

ଦେବ—ତୁ ଠିକ୍ କହିଚୁ ଚନ୍ଦ୍ରିକା ! ମଶାଣିଟା ସାରା ଖୋଜି ଖୋଜି ମୁଁ ଯୋଉ ଫୁଲ୍ ତୋଳି ଆଣିଚି, ସେ ଘାସଫୁଲ୍ ନୁହେଁ, ସେ ହଉଚି ରଜନୀଗନ୍ଧା । ମୋର Selection ରେ ଭୁଲ୍ ହେଇନି । ନା-ନା, ମୋ Selection ରେ ଭୁଲ୍ ହେଇନି । (ପ୍ରସ୍ଥାନ । ଦେବବାବୁଙ୍କ ପ୍ରସ୍ଥାନ ପରେ ଖଟ ଉପରୁ ଉଠି ଚନ୍ଦ୍ରିକା ଘର ଭିତରକୁ ଗଲା । ଧୀପାବଳୀରେ ଆଲୋକମାଳା ଲିଭିଗଲା । ପଛ ପାଖରେ ଦେଖାଗଲା ସୀତା । ଚନ୍ଦ୍ରା ପୁଣି ପ୍ରବେଶକଲା ଓ ଖଟରେ ବସିଲା । ପାଖକୁ ଆସିଲା ସୀତା । ମୁହଁରେ ତା'ର ବଜ୍ରସ୍ମିତର ଭାବ·····)

ସୀତା—ଚନ୍ଦ୍ରା !

ଚନ୍ଦ୍ରିକା—କିଏ ? ଆପଣ !

ସୀତା—ଏ ଷଡ଼ଯନ୍ତ୍ରର ପରିଣାମ କ'ଣ ଜାଣୁ ? ଜାଣୁ ଏ ଛଳନାମୟ ନାଟକର ଯବନିକା କୋଉଠି ପଡ଼ିବ ?

ଚନ୍ଦ୍ରିକା—ଛଳନା ? ଷଡ଼ଯନ୍ତ୍ର ? କାହାରି ଉପକାର କରିବା ଲାଗି ଯଦି ଛଳନା କରାଯାଇ ଥାଏ, ତା କ'ଣ ଦୋଷାବହ ?

ସୀତା—ଉପକାର କରିବାର ଆବରଣ ତଳେ ତୁ କ'ଣ ସ୍ୱାର୍ଥସିଦ୍ଧି କରିନୁ ? ମାସକୁ ଦେଢ଼ ହଜାର ଟଙ୍କା, ଆଉ କୁଳବଧୂର ସମ୍ମାନ; ଜଣେ ପତିତା ଜୀବନରେ ଏ ଦୁଇଟି କ'ଣ ଚରମ ସାର୍ଥକତା ନୁହେଁ ? ପତ୍ନୀସାଧୀର ଏ ସମ୍ମାନ କ'ଣ ତୋ ଜୀବନରେ ଏକ ନୂତନ ଆସ୍ୱାଦନ ନୁହେଁ ?

ଚନ୍ଦ୍ରିକା—ଆପଣ ଠିକ୍ କହିଚନ୍ତି ସୀତା ଦେବୀ ! ଏଇ ଶାନ୍ତି, ଏଇ ସମ୍ମାନ ଲାଗି ମୁଁ ଦିନ ଦିନ ଧରି ସ୍ୱପ୍ନ ଦେଖିଆସିଛି ।

ସୀତା—ତୋର ସେ ସ୍ୱପ୍ନ ଭୁଲ୍, ତାହା ତୋର ମସ୍ତବଡ଼ ଦୁଃସାହସ । ଗୋଟାଏ ଘୃଣିତ ବେଶ୍ୟା; ତା'ର ପୁଣି ଭଦ୍ରଘରେ ବୋହୂ ହେବାର ଆଶା ? ମଶାଣିର ଫୁଲ ହୋଇ, ଦେବତାର ନୈବେଦ୍ୟ ହେବାକୁ ମନ ?

ଚନ୍ଦ୍ରିକା—ସୀତା ଦେବୀ !

ସୀତା—ଚୁପ୍ କର ! ତୋର ଦୁଃସାହାସ ଦେଖି ମୁଁ ଆଶ୍ଚର୍ଯ୍ୟ ହଉଚି । ଗୋଟାଏ ଭଦ୍ର ପରିବାରକୁ ଘୃଣିତ କରିଦେଇ ତୋର ଲାଭ କ'ଣ ହବ କହିପାରିବୁ ?

ଚନ୍ଦ୍ରିକା—ମୁଁ ଘୃଣିତ କରିଦେଇଚି ?

ସୀତା—ନୁହେଁ ? ଯୋଉଦିନ ମାଉସୀ ଜାଣିବେ ତୋର ପ୍ରକୃତ ପରିଚୟ, ସେଦିନ ସେ କେତେ ବଡ଼ ଧକ୍କା ପାଇବେ ଅନୁମାନ କରିପାରୁଚୁ ? ଯଦି ଶୁଭ ଭଲ ହୋଇଯାଏ, ତେବେ ସେ ଯେତେବେଳେ ଜାଣିବ ତା'ର ପାଗଳାମିର ସୁଯୋଗ ନେଇ, ତାକୁ ଜଣେ ବେଶ୍ୟା ସହିତ ବିବାହ କରି

ଦିଆଯାଇଛି, ତା'ର ମନର ଅବସ୍ଥା କ'ଣ ହବ ଭାବି ପାରୁଛ ?

ଚନ୍ଦ୍ରିକା—ଗୀତାଦେବୀ ! ନା ନା, ସେ ମତେ ଭଲପାନ୍ତି । ମତେ ଛାଡ଼ି ସେ ମୁହୂର୍ତ୍ତେ ଚଳିପାରିବେ ନି । ସେ ମୋର ଅତୀତକୁ କ୍ଷମା ଦେବେ ।

ଗୀତା—ମିଛ, ଅସମ୍ଭବ; ସେ ଯଦି ଭଲ ହୋଇଯାଏ ତେବେ ତା'ର ବନ୍ଧୁଙ୍କ ଆଗରେ ସ୍ତ୍ରୀର କି ପରିଚୟ ଦବ ? ସେ କ'ଣ କହି ପାରିବ, ମୋର ସ୍ତ୍ରୀ ଜଣେ ଅଜ୍ଞାତକୁଳଶୀଳା ପତିତା ବୋଲି ? ସମାଜରେ ସେ ମୁଣ୍ଡ ଟେକି ଚାଲିବ କିମିତି ?

ଚନ୍ଦ୍ରିକା—ଓଃ, ଗୀତାଦେବୀ ! ବନ୍ଦ କରନ୍ତୁ, ବନ୍ଦ କରନ୍ତୁ ଆପଣ—

ଗୀତା—ଗୋଟିଏ ମୁହଁର କଥା ଏତେ ଅସହ୍ୟ ହେଉଛି ? ସାରା ସହର, ସମୁଦାୟ ସମାଜର ଭର୍ତ୍ସନା ସୋଉଦିନ ଶୁଣିବାକୁ ପଡ଼ିବ, ସେଦିନ ?

ଚନ୍ଦ୍ରିକା—ମୁଁ ଜାଣେନି ଗୀତାଦେବୀ ! ଭବିଷ୍ୟତ ମୋର ଲୁଚିରହିଛି ସମୟର କୋଳରେ । ଅତୀତକୁ ମୁଁ ନିଜେ ନିଶ୍ଚିହ୍ନ କରିଦେଇ ଆସିଛି । ମୁଁ କେବଳ ଜାଣେ ଆଜିର ଏ ସ୍ୱର୍ଗ । ଯାହାଲାଗି ମୁଁ ଦିନ ଦିନ, ରାତି ରାତି କେତେ ଆଶା କରି ଚାହିଁ ରହିଥିଲି—

ଗୀତା—ବାଃ, ନିଜର ସ୍ୱପ୍ନର ସାର୍ଥକତା ପାଇଁ, ନିଜର ସ୍ୱାର୍ଥ ପାଇଁ ଜଣେ ଭଦ୍ରଲୋକର ପରିବାରକୁ ପୋଡ଼ି ପାଉଁଶ କରିଦେବାକୁ ଆଗେଇ ଆସିଛ ? ଏଇ ତୋର ଉଦାରତା, ଏଇ ତୋର ସ୍ୱାର୍ଥ ତ୍ୟାଗ; ଯାହାର ଆସ୍ଫାଳନ ତୁ ଦେବତାଙ୍କ ଆଗରେ କରୁଥିଲୁ ?

ଚନ୍ଦ୍ରିକା—ଏଥିରେ ମୋର ଦୋଷ କ'ଣ ? ମୁଁ ତ ଦେବବାବୁଙ୍କୁ ଅନୁରୋଧ କରିବାକୁ ଯାଇ ନ ଥିଲି । ଏ ପରିବାରର ସ୍ୱାର୍ଥ ଲାଗି ସେ ମତେ ଡାକି ଆଣିଚନ୍ତି । ଆଜିର ଏ ପରିସ୍ଥିତି ଲାଗି ଯଦି କେହି ଦାୟୀ ହୁଅନ୍ତି, ସେ ହେଉଚନ୍ତି ଆପଣ ଆଉ ଦେବବାବୁ ।

ସୀତା—Shut up ! ମୋର ଦୋଷ ଗୁଣ ବିଚାର କରିବୁ ତୁ ?

ଚନ୍ଦ୍ରିକା—ଯା'ନ୍ତୁ ସୀତାଦେଈ ! ମୋ ସାଙ୍ଗରେ କଳି କରିବାଦ୍ୱାରା ଆପଣଙ୍କର କିଛି ସ୍ୱାର୍ଥ ସିଦ୍ଧି ହବ ନି ।

ସୀତା—ଓଃ, ସ୍ୱାମୀ ଓ ଶାଶୁ ଦିହିଁଙ୍କର ଆଦର ପାଇ ତୋର ଏ ଅହଙ୍କାର, ନାଁ ? ବେଶ୍, ମୁଁ ମଧ୍ୟ ଦେଖିବି ଭଦ୍ରଲୋକ ଘରେ ଜଣେ ପତିତା କମିତି ବୋହୂ ହୋଇ ରହିବ । ରାଗରେ ପ୍ରସ୍ଥାନ) (ଚୂପ୍ ହୋଇ ବସିରହିଲା ଚନ୍ଦ୍ରା । ତା'ପରେ ଦୁରି ସ୍ଲୁଚ ବାଟେ ଦେଇ ପ୍ରବେଶ କଲା ।)

ଦୁରି—ଚନ୍ଦ୍ରା !

ଚନ୍ଦ୍ରିକା—କିଏ ? ଦୁରି'ଇ ? ତୁ ଏଠି ?

ଦୁରି—ଚାଲ୍, ମୋ ସାଙ୍ଗରେ ଚାଲ୍ । ତତେ ମୁଁ ଏଠୁ ଉଦ୍ଧାର କରିନେବାକୁ ଆସିଚି ମରି ।

ଚନ୍ଦ୍ରିକା—ତୋ ମୁଣ୍ଡ ଖରାପ ହୋଇଯାଇଚି ନା କ'ଣ ?

ଦୁରି—ମୁଣ୍ଡ ଖରାପ ହୋଇଯାଇଚି ତୋର; ତା' ନ ହେଲେ ଗୋଟାଏ ପାଗଳ ସାଙ୍ଗରେ ତୁ ରହିଥାନ୍ତୁ ? ଆ, ଚାଲିଆ ମୋ ସାଙ୍ଗରେ ।

ଚନ୍ଦ୍ରିକା—ତା' କ'ଣ ଆଉ ସମ୍ଭବ ହୁଇ ? ମୁଁ ଯେ ତାଙ୍କୁ ବାହାହେଇଚି ।

ଦୁରି—ବାହା ହେଇଚୁ ? ? କିନ୍ତୁ ଗୋଟେ ପାଗଳାକୁ···

ଚନ୍ଦ୍ରିକା—ସେ ପାଗଳା ହୁଅନ୍ତୁ ବା ଭିକାରୀ ହୁଅନ୍ତୁ, ସେ ଯେ ମୋର ସ୍ୱାମୀ ।

ଦୁଲ୍ଲ—ଚନ୍ଦ୍ରା !

ଚନ୍ଦ୍ରିକା—ଦୁଲ୍ଲଭାଇ, ତୁ ବୁଝିପାରୁନ ସ୍ତ୍ରୀର ମନ କଥା । ବେଦୀରେ ବସି ବାହା ହବାର ଆଶା କାହାର ନ ଥାଏ ?

ଦୁଲ୍ଲ—କିନ୍ତୁ ମୁଁ କ'ଣ କହିନଥିଲି ତତେ ବାହା ହେବି ବୋଲି ? ମୁଁ କ'ଣ କହିନଥିଲି ବ୍ୟାଣ୍ଡ ବଜାଇ, ରୋଷଣି କରି ତତେ ନବାକୁ ଆସିବି ବୋଲି ? ତୁ ମୋ ଲଗି ଅପେକ୍ଷା କଲୁନି କାହିଁକି ? ମୁଁ ଗରିବ ମଠର କ୍ଲନର ବୋଲି ?

ଚନ୍ଦ୍ରିକା—ଛିଃ ଦୁଲ୍ଲଇ, ସେ କଥା କହନି । ମୁଁ ତତେ ଭଲ ପାଉଥିଲି । ଏବେ ମଧ୍ୟ ଯଥେଷ୍ଟ ସ୍ନେହ କରେ ।

ଦୁଲ୍ଲ—ତେବେ ତୁ ମତେ ଧୋକ୍କା ଦେଲୁ କାହିଁକି ? କାହିଁକି ମୋର ଏତେବଡ଼ ଆଶାକୁ ଠୋକ୍‌ର ମାରି ଚୂନା କରିଦେଲୁ ? ତତେ ବାହା ହେଇ ଘରକୁ ଆଣିବି ବୋଲି ଯାହା ନ କରିବା କଥା ମୁଁ କଲି । ହେଲେ ମତେ ଫାଙ୍କିମାରି ତୁ ଟଙ୍କା ଲୋଭରେ ଗୋଟେ ପାଗଳକୁ ଆଦରି ନେଲୁ ?

ଚନ୍ଦ୍ରିକା—ଦୁଲ୍ଲ'ଇ !

ଦୁଲ୍ଲ—ଚୁପ୍‌କର ! ଗୋଟାଏ ନାଚବାଲି, ପଇସାଲାଗି ଯିଏ ଇଜତ୍‌ ବିକୁଛି, ତା ଠୁ ଅଧିକ ଆଶା କରି ମୁଁ ଭୁଲ କରିଛି । ସେଇଥି-ଲାଗି ଆଜିକି ଦି'ମାସ ହେଲା ପାଗଳା କୁକୁର ଭଳି ଗଳି ଗଳି, ରାସ୍ତା ରାସ୍ତା, ବୁଲି ଭୁଲର ପ୍ରାୟଶ୍ଚିତ୍ତ କରିଛି । ମାତ୍ର ଆଉ ନୁହେଁ—ଚାଲ୍‌, ଆଜି ତତେ ମୋ ସାଙ୍ଗରେ ଯିବାକୁ ହବ ।

(ହାତ ଧରି ଉଠିଲା)

ଚନ୍ଦ୍ରକା—ଦୁଲ୍ଲଭାଇ ! ଛାଡ଼ିଦେ ମତେ; ନାଚବାଲି ଚନ୍ଦ୍ରିକା ମରିଯାଇଛି ଦୁଲ୍ଲଭାଇ ! ମୁଁ ଯେ ମିଶ୍ର ଘରର ବୋହୂ ।

ଦୁର୍ବା—ବୋହୂ ? ମିଶ୍ର ଘରର ବୋହୂ ? ଏ ବଡ଼ ଲୋକଙ୍କୁ ତୁ କ'ଣ ଆଜିଯାଏ ଚିହ୍ନି ପାରିଲୁନି ଚନ୍ଦ୍ରା ? ଏମାନେ କ'ଣ ଗରିବକୁ କେବେହେଲେ ନିଜର କରି ନେଇ ପାରିବେ ? ସ୍ବାର୍ଥର ମନରୁ ଗର୍ବ, ଅହଙ୍କାର କ'ଣ କେବେହେଲେ ଲିଭିଯିବ ? ଏମାନେ କ'ଣ କେବେହେଲେ ଗୋଟାଏ ନାଚବାଲୀକୁ ଘରର ବୋହୂ କରି ନେଇ ପାରିବେ ?

ଚନ୍ଦ୍ରିକା—ସେମାନେ ମତେ ବୋହୂ କରିଚନ୍ତି ଦୁର୍ବାଭାଇ ! ଶାଶୁ, ନଣନ୍ଦ, ସ୍ୱାମୀ, ସମସ୍ତେ ମତେ ଆଗର ସ୍ନେହ ଦେଇ କିଣି ନେଇଚନ୍ତି ।

ଦୁର୍ବା—ମିଛ କଥା; ସବୁ ଖାଲି ଛଳନା । ଆଜି ତାଙ୍କର ଦରକାର ଅଛି ବୋଲି ଏ ଆଦର, ସ୍ନେହ; କାଲି କାମ ଶେଷ ହୋଇଗଲେ ତତେ ଗୋଇଠା ମାରି ରାସ୍ତାରେ ଛିଡ଼ା କରିଦେବେ । ଲୋକଙ୍କର ବାହାଘର ଚକ୍‌ଚକ୍‌ଣରେ ଭୁଲିଯାଉଚୁ କାହିଁକି ? ଚାଲ—

ଚନ୍ଦ୍ରିକା—ନା ।

ଦୁର୍ବା—ନା ।

ଦୁର୍ବା—ଚନ୍ଦ୍ରା ! ମତେ ଚିହ୍ନିଚୁନା ? ମୋ କଥାରେ ନାହିଁ କଲେ ନିଜକୁ ଭଲ ହବନି କହିଦଉଚି ।

ଚନ୍ଦ୍ରିକା—ତୁ ଯା, ଦୁର୍ବାଭାଇ ! ତୋର ମଦ ନିଶା ଛାଡ଼ିଗଲେ ତୁ ସବୁ ବୁଝିପାରିବୁ ।

ଦୁର୍ବା—ଆଜିବି ମଦ ଖାଇଚି ତ ମୋ ରୋଜଗାର ପଇସାରେ ଖାଇଚି; ତତେ ତ ଭିକ ମାଗିବାକୁ ଆସିନି । ତୁ ଭଲରେ ଯିବୁ ନା ତତେ ଟେକି ନେଇଯିବାକୁ ହବ ?

ଚନ୍ଦ୍ରିକା—ଦୁର୍ବାଭାଇ ! ତୋ ଗୋଡ଼ତଳେ ପଡ଼ୁଛି; ତୁ ଶୀଘ୍ର ଗଲୁ ଏଠୁ ।

ଦୁର୍ଗ—ନା, ଭଲରେ ମାନିବନି ସେ । ଚାଲ୍ ମୋ ସାଙ୍ଗରେ—

(ଦୁର୍ଗ ଚନ୍ଦ୍ରିକାର ହାତ ଧରି ଉଠିଲା)

ଚନ୍ଦ୍ରିକା—ଦୁର୍ଗାଇ ! ଛାଡ଼ ଦେ' ଦୁର୍ଗାଇ !

(ଶୁଭ ଆସିଚି । ପାଟି କରି ଉଠିଲା ମଧୁ; ଦୁର୍ଗ ପଳେଇବାକୁ ବସିଲା—ଶୁଭ ଚନ୍ଦ୍ରିକାକୁ ତଳେ ପକେଇ ମାରିବାକୁ ଲାଗିଲା । )

ଶୁଭ—ମଧୁ ! ତୁ' ନା ମୋ କନିଆଁ ? ତୁ ମତେ ବାହା ହେଇଚୁ ନା ? ଅସତୀ, କୁଳଟା, ପତିତା ! ଆଜି ମୁଁ ତତେ ଖୁନ୍ କରିବି । ତୋ ରକ୍ତ ଚଟା ନେବି ।

(ଚନ୍ଦ୍ରିକା ଆଘାତ ସହୁଥାଏ; ମାତ୍ର ଦୁର୍ଗ ସହ୍ୟକରି ନପାରି ଆସି ଶୁଭକୁ ଠେଲିଦେଲା । ଶୁଭ ପଡ଼ିଗଲା । ପକେଟ୍ରୁ ହାତୁଡ଼ି କାଢ଼ି ମାରିବାକୁ ଧାଇଁଲା )

ଦୁର୍ଗ—ଆବେ, ତୋର ସେ ମଜାକ ? ତୁ ତା' ଉପରକୁ ହାତ ଉଠେଇବୁ ? ବଦ୍‌ମାସ୍, ବେଆଦବ୍ !

( ଚନ୍ଦ୍ରିକା ଦୁର୍ଗ ଗୋଡ଼କୁ ଚାପି ଧରିଲା )

ଚନ୍ଦ୍ରିକା—ନା—ନା, ତାଙ୍କୁ ମାରନା; ତାଙ୍କୁ ମାରନା—ସେ ସେ ମୋର ସ୍ୱାମୀ, ମୋର ସ୍ୱାମୀ !

ଦୁର୍ଗ—ସ୍ୱାମୀ ? ଆଶ୍ଚର୍ଯ୍ୟ !

(ଚନ୍ଦ୍ରିକାକୁ ଥରେ ଓ ଶୁଭକୁ ଥରେ ଚାହିଁ, ଦୁର୍ଗ ଧାଇଁ ଚାଲିଗଲା । ଧରିଥିବା ହାତୁଡ଼ି ଫିଙ୍ଗିଦେଲା ଓ ପାଇପ୍ ଧରି ତଳକୁ ଓହ୍ଲେଇଗଲା)

—ଅନ୍ଧାର—

———

# ଅଷ୍ଟମ ଦୃଶ୍ୟ

[ ପକ୍କା ଘର, ଦୁଇଟି ଚୌକି ଓ ଗୋଟିଏ ଟେବୁଲ୍ । ହାତରେ ଷ୍ଟେଥସ୍କୋପ ଓ ବ୍ଲଡ଼୍ ପ୍ରେସର ଯନ୍ତ୍ର ଧରି ପ୍ରବେଶ କଲେ ଡାକ୍ତର ଓ ତାଙ୍କ ସହିତ ସବିତା ]

ଡାକ୍ତର—ହାଃ ହାଃ ହାଃ ! ନା ନା, ଆଉ ଭୟର କାରଣ କିଛିନାହିଁ; ଶୁଭ୍ର ପ୍ରାୟ ଭଲ ହୋଇଗଲାଣି ନୂଆନବୋଉ ! ବାକି ଯାହା ଅଛି ତା ବିଶ୍ରାମ ଆଉ ବଳକାରକ ଖାଦ୍ୟଦ୍ୱାରା ପୂରା ହୋଇଯିବ ଯେ—

ସବିତା—ସତ କହୁଚ ? ଶୁଭ୍ର ମୋର ପୁଣି ମଣିଷ ହୋଇଯିବ ?

ଡାକ୍ତର—ହୋଇଯିବ କ'ଣ ନୂଆନବୋଉ, ହୋଇଗଲାଣି ବୋଲି ଧରିନିଅ । ବଡ଼ ଶଙ୍କିତ ମନରେ ଏ Experiment ଆରମ୍ଭ କରିଥିଲି । ଯାହା ହେଉ, ହେବ ଆଉ ମଧୁଙ୍କର ଚେଷ୍ଟାରେ ସେ ପରୀକ୍ଷା ମୋର ସଫଳ ହୋଇଚି ।

ସବିତା—ଭଗବାନ୍ ତୁମ ହାତରେ ଅମୃତ ଦିଅନ୍ତୁ !

ମଣି—(ଚାହା ଧରି ପ୍ରବେଶ କଲା) ଦାଦା, ଆପଣଙ୍କ ଚା' ।

ଡାକ୍ତର—ହଁ ମା' ! ଦେ ।

ସବିତା—ଆଲୋ ହଇଣି, ଦାଦାଙ୍କ ଲାଗି ଜଳଖିଆ ଟିକିଏ ଆଣି ଦେଲୁ ନି ? ଖାଲି ଚା' ନେଇ ଆସିଚୁ ?

ଡାକ୍ତର—ଥାଉ, ଥାଉ ନୂଆନବୋଉ ! ଖାଲି ଚା'ରେ ମୋର କିଛି କ୍ଷତି ହବ ନି । ଆଉ ଜଳଖିଆ କ'ଣ କୁଆଡ଼େ ଚାଲିଯାଉଚି ? ଯୋଉଦିନ ଶୁଭ୍ର ସୁସ୍ଥହୋଇ ବାଣ୍ଡରେ ଚାଲିବ, ସେଇଦିନ

ମିଠେଇ ଖାଇବାକୁ ଦବ ଯେ, ଦେଖିବା ନକେତେ ଖୁଆଇ ପାରିବ, ହାଃ-ହାଃ—

ସବିତା—ମାଧବଙ୍କ ଇଚ୍ଛା ! ପ୍ରକୃତରେ ତୁମର ଋଣ ଶୁଝିବାକୁ ମୋ ପାଖରେ ସମ୍ବଳ ନାହିଁ । ଟଙ୍କା ଦେଇ କ'ଣ ତୁମ ଉପକାରରୁ ମୁକ୍ତ ମିଳିବ ? ଝିଅଟିକୁ ଆଣିବ ବୋଲି କେତେ ଆଶା କରିଥିଲି ଯେ—

ଡାକ୍ତର—ସବୁ ଭଗବାନଙ୍କ ବରାଦ ନୂଆବୋଉ ! ତୁମେ ମୁଁ ଆଉ କ'ଣ କରିବା କୁହ ? ଅମର ଭାଇ ଥିଲାବେଳେ ଜିଗର କରିଥିଲେ ଯାହା ଆଜି ଶୁଭଙ୍କର ବାହାଘର ଲାଗି । ଛାଡ଼, ଭଗବାନ୍ ଯାହା କରନ୍ତି ମଙ୍ଗଳ ପାଇଁ; ତା ନ ହେଲେ, ଏଡ଼େ ସୁନ୍ଦର ଲକ୍ଷ୍ମୀପରି ବୋହୂଟିଏ ତୁମେ କୁଆଡ଼ୁ ପାଇଥାନ୍ତ ?

ସବିତା—ସେକଥା ସତ; ମଧୁ ଭଳି ବୋହୂଟିଏ ଭାଗ୍ୟରେ ଥିଲେ ମିଳିବ ପରା । ଘରଦ୍ୱାର, ସ୍ୱାମୀ, ଶାଶୁ, ନଣନ୍ଦ ସମସ୍ତଙ୍କ କଥା ବୁଝିବା, ସମସ୍ତଙ୍କ ମନ ଜାଣି କାମ କରିବା କ'ଣ ସହଜ କଥା ହୋଇଛି ? ଏଡ଼େ ବୟସେ ଝିଅ, ହେଲେ ପାକଶାଙ୍କ ଭଳି ମନ ପ୍ରାଣ ଲଗେଇ ସେବିକ ଧ୍ୟାନ କଲାବୋଲି ସିନା ମୋ ଶୁଭକୁ ମଣିଷ କଲା ! ସେଥିରେ ମୋର ପୁଣି ଛୁଆଁ ଅଛୁଆଁ, ପୂଜା ବ୍ରତକୁ ଜଗିରଖି ଚଳିବା ତ କାଠକର ପାଠ ।

ମଣି—ଶୁଣିଲ ତ···ଜାଣିଚନ୍ତି ନା ଦାଦା, ଥରେ ସୁନାନାକୀ ବୋହୂର ଗୁଣ ଗାଇବାକୁ ସୁବିଧା ମିଳିଗଲେ ଆଉ କମା, ପୂର୍ଣ୍ଣଚ୍ଛେଦ, କିଛି ମାନିବ ନା । ସରକାର ଆପଣା ଗୁଣ ଗାଇବାକୁ ଶୁଣିଲଣି ପୃଷ୍ଠାର ଉତ୍କଳ ପ୍ରସଙ୍ଗ କ'ଣ ଗ୍ରନ୍ଥସୂଚନା ? ବୋଉ ତା' ବୋହୂର ଗୁଣ ଗାଇବସିଲେ ଅଠରଖଣ୍ଡ ମହାଭାରତ ହେବ ।

ସବିତା—ହେ ଫାଜିଲ୍ ! ବଡ଼ମାନେ କଥାବାର୍ତ୍ତା ହେଲାବେଳେ ମଝିରେ ପୁଣି କଥା କହୁଛୁ ? ଏଇଟା କାହା ଘରେ ଯାଇ କମିତି ଚଳିବ କେଜାଣି ।

ଡାକ୍ତର—କରୁ, କରୁ ନୂଆବୋଉ ! ଫାଜିଲମି କରିବାର ବେଳ ତ ଏଇ । ଶାଶୁ ଘରେ କ'ଣ ଆଉ ସେ ସୁବିଧା ମିଳିବ ? ବେକରେ ପଡ଼ିଲେ ବଳେ ବଳେଇ ଶିଖିଯିବ ଯେ ।

ମଣି—ମୁଁ କ'ଣ ବେକରେ ପକେଇବି ଯେ, ବଳେଇ ଶିଖିବି ?

ଡାକ୍ତର—ମାନେ ? କ'ଣ ଚିରକୁମାରୀ ହୋଇ ରହିବୁ ନା କ'ଣ ?

ମଣି—ହଁ, ମୈ ଶାଦି ନେହିଁ କୁରୁଙ୍ଗୀ—

ସବିତା—ଚୁପ୍ । ଅଣ୍ଡିରାଗୁଡ଼ା ଏ ଝିଅ ହେଇଯାଉଛି । ଯା, ସିଆଡ଼େ ଯା ! (ମଣି ପ୍ରସ୍ଥାନ) ଶୁଣିଲଟି ? ଝିଅଙ୍କ ରଙ୍ଗଢଙ୍ଗ ଦେଖିଲ ତ ? ଆଜି କାଲି ତ ସବୁ ଝିଅ ଏମିତି ହେଲେ;କାହାକୁ କ'ଣ କହିବ କହିଲ ?

ଡାକ୍ତର—କ'ଣ କରିବା ନୂଆବୋଉ ! ଆମ କାଳ ଥିଲା ପ୍ରକାରେ, ଆଉ ଏମାନଙ୍କ ବେଳକୁ ହେଲାଣି ଆଉ ପ୍ରକାରେ । ଖାଣ୍ଟମାଣ୍ଟ, ଆଇନ୍ କାନୁନ୍, ସବୁ ବଦଳି ଯାଉଛି ପରା ! ଛାଡ଼, ମୁଁ ଯାଏ; ତେଣେ ରୋଗୀମାନଙ୍କର ଭିଡ଼ ହୋଇ-ଯିବଣି Clinic ରେ ।

ସବିତା—ହଁ, ଡାକ୍ତର ! ଖିତା ଆଉ କାହିଁକି ଆସିନି ଆମ ଘରକୁ ଆଉ ? ଆମ ଉପରେ ରାଗିଛି ନା କ'ଣ ?

ଡାକ୍ତର—ଆରେ ନା ନା, ରାଗିବ କାହିଁକି ? ସେଇ ପଢ଼ାଘରେ ତ ସବୁବେଳେ ଦୁଆର ଦେଇ ବସିରହୁଛି । ହଉ, ମୁଁ କହି-ଦେବି ତାକୁ; ଆସିବ, ବୁଲିଯିବ । ନମସ୍କାର ନୂଆବୋଉ !

( ଡାକ୍ତର ପ୍ରସ୍ଥାନ )

ସବିତା—ମଣି, ମଣି । (ମଣି ପ୍ରବେଶ) ନଆବୋଉ କ'ଣ କରୁଚ ?
ମଣି—ଭାଇଙ୍କି ଜଳଖିଆ ଖୁଆଇ ଦଉଚନ୍ତି । ହେଇଟି ବୋଉ ଜାଣିଚୁ ନା ?
ସବିତା—କେଉଁ କଥା ?
ମଣି—ନୂଆବୋଉଙ୍କର ପିଲା ହବ ।
ସବିତା—କ'ଣ କହିଲୁ ? ସତ ? କିଏ, ବୋହୂ କହୁଥିଲା ?
ମଣି—ସେ କ'ଣ କହୁଥିଲେ କି ? କେତେ ଖୋଳତାଡ଼ ମୁଁ କଥା ଆଦାୟ କରିଚି ନା ।
ସବିତା—ଠାକୁରେ ମୋ ଡାକ ଶୁଣିଲେ ମା' ! ଶୁଭ ମୋର ପୂର୍ଣ୍ଣ ମଣୋଷ ହୋଇଗଲା ? ବୋହୂ କୋଡ଼ରେ ଛୁଆ ବକଟେ ହବ, ମୋର ମାନସିକ ପୂର୍ଣ୍ଣ ହୋଇଗଲା ? ମା' ! ମାଧବଙ୍କୁ ରୂପା ବଂଶ ଯାଚିଥିଲି; ଠାକୁରେ ମୋ ଅଳି ଶୁଣିଚନ୍ତି । ଠାକୁରେ ! ହେ ମାଧବ ! (ପ୍ରସ୍ଥାନ ! ମଣି କପ୍ ନେଇ ଯାଉଥିଲା ବେଳେ)
ଯୋଗେଶ—(ନେପଥ୍ୟେ) ମା' ଘରେ ଅଛନ୍ତି କି ? ମା ?
ମଣି—କିଏ ? ଭିତରକୁ ଆସନ୍ତୁ ।
ଯୋଗେଶ—ଆଜ୍ଞା ହଁ, ଯାଉଚି । ହେଃ ହେଃ ନମସ୍କାର ! (ମଣିଙ୍କ ଦେଖି ଉତ୍କଣ୍ଠା ହୋଇ ଚାହିଁରହିଲା)
ମଣି—ନମସ୍କାର, ! ଆପଣ କାହାକୁ ଖୋଜୁଛନ୍ତି ? (ଯୋଗେଶ ନୀରବ) ବୋଉକୁ ଡାକଦେବି ?······କ'ଣ କିଛି କାମ ଥିଲା ତା ପାଖରେ ?···କ'ଣ ଦରକାର ଆପଣଙ୍କର ? (ଯୋଗେଶଙ୍କର ଅବସ୍ଥା ଦେଖି ମଣି ତା ମୁହଁ ଆଗରେ ହଠାତ୍ ତାଳିମାରିଲା । ଯୋଗେଶର ମୋହ କଟିଯାଇ ପ୍ରକୃତିସ୍ଥ ହେଲା)
ଯୋଗେଶ—ମା-ମା-ମା' ଅଛନ୍ତି ?

ମଣି—ହଁ; ଡାକଦେବ ?

ଯୋଗେଶ—ନା ନା, ସେ ଭିତରେ ଥା'ନ୍ତୁ । ଆପଣଙ୍କ ଯିବା ଦରକାର ନାହିଁ ।

ମଣି—ଆଉ ମୁଁ କ'ଣ କରିବ ? ଆପଣଙ୍କ ଆଗରେ ଏମିତି ଛିଡ଼ା ହୋଇଥିବ ?

ଯୋଗେଶ—ହଁ ।

ମଣି—କ'ଣ କହିଲେ ? ବଡ଼ ଅସଭ୍ୟ ଲୋକ ତ ଆପଣ ?

ଯୋଗେଶ—ନା ନା ନା, ଭୁଲ୍ ହୋଇଗଲା । ସବୁ ଗୋଳମାଳ ହୋଇଗଲାଣି ଉପର ମହଲାରେ ।

ମଣି—କୋଉ ଉପର ମହଲାରେ ?

ଯୋଗେଶ—ମୋର ନିଜ ଉପର ମହଲାରେ । ଏଠି, ମୁଣ୍ଡରେ; ରହନ୍ତୁ ରହନ୍ତୁ, ମୁଁ କାହିଁକି ଆସିଥିଲି କହି ପାରିବେ ?

ମଣି—ଆପଣ କାହିଁକି ଆସିଥିଲେ ସେକଥା ମୁଁ କହିବ ?

ଯୋଗେଶ—ନା ନା ନା, ଆପଣ କମିତି କହିବେ ? ଆପଣ କମିତି ଜାଣିବେ ମୋ ମନର କଥା, ମୋ ହୃଦୟର ବ୍ୟଥା ? ଆପଣ, ନା ନା ।

ମଣି—ଓ ବାବୁ ! ବହୁତ ପାଗଳାମି କଲେଣି । ଏଥର ଶୀଘ୍ର ବାହାରକୁ ଗଲେ ।

ଯୋଗେଶ—ଆଜ୍ଞା ହଁ ! ଆପଣ ଯାହା କହିବେ ସେଇଆ ହବ । (ଯାଉ ଯାଉ ଫେରିଆସି) ଆଜ୍ଞା, ହଁ, ମନେ ପଡ଼ିଗଲା; ମା'ଙ୍କୁ ଟିକଏ ଡାକ ଦିଅନ୍ତୁ । ସେଠ୍ଜୀ ଦେଖା କରିବାକୁ ଆସିଚନ୍ତି ।

ମଣି—ସେଠ୍ଜୀ ? କୋଉ ସେଠ୍ଜୀ ?

ଯୋଗେଶ—ସେଠ୍ ଗଣପତ୍ରାମ୍; ଆପଣଙ୍କ ପଡ଼ଶା ।

ମଣି—ସେଇ କଥା କହିବାକୁ ଆସି ଅଧଘଣ୍ଟେ ହେଲା ସୁଆଙ୍ଗ ଲଗେଇଚନ୍ତି ?

ଯୋଗେଶ—ଦୟା କରି କ୍ଷମିବେନ । ଆପଣଙ୍କୁ ଦେଖି ସବୁ କେମିତି ହଠାତ୍ ଗୋଳମାଳ ହୋଇଗଲା । ନ ହେଲେ ମୁଁ ଖୁବ୍ ଥଣ୍ଡା ମିଜାଜର ଲୋକ । ଟିକଏ ମା'ଙ୍କୁ ଡାକଦିଅନ୍ତୁ; ସେଠ୍‌ଜୀ ବାହାରେ ଅପେକ୍ଷା କରିଚନ୍ତି ।

ମଣି—ଭିତରକୁ ଡାକ ବସାନ୍ତୁ । ମୁଁ ବୋଉକୁ ଡାକଦେଉଚି । (ମଣି ପ୍ରସ୍ଥାନ । ଯୋଗେଶ ସେଇ ଆଡ଼କୁ ମୁଗ୍ଧ ଭାବରେ ଚାହିଁରହିଲା । ପ୍ରବେଶକଲେ ସେଠ୍‌ଜୀ)

ସେଠ୍‌ଜୀ—ଆରେ ଓ ଯୋଗିଆ ! ସେଠି କୋଣ କରୁଚ ? ଅଧଘଣ୍ଟା ହୁଆ ମୁଇଁ ଗାଡିରେ ବସିଚ; ଆଉର୍ ତୁମ୍ ଇଠେ କୋଣ କରୁଚ ?

ଯୋଗେଶ—(ପ୍ରକୃତିସ୍ଥ ହୋଇ) କ'ଣ କହିଲେ ଆଜ୍ଞା ! ବସନ୍ତୁ ବସନ୍ତୁ; ମା' ଆସୁଚନ୍ତି ।

ସେଠ୍‌ଜୀ—ଠିକ୍ ଅଛୁ । ତୁମ୍ ଯାଓ ଗଦ୍ଦିମେ ରହୋ ।

ଯୋଗେଶ—ଚାଲିଯିବି ? ଏଠି ଆପଣଙ୍କର ଅସୁବିଧା ହବ ?

ସେଠ୍‌ଜୀ—ଆରେ ନେହିଁ ନେହିଁ, ମୁଇଁ ଠିକ୍ ଅଛୁ, ତୁମ୍ ଯାଓ ।

ଯୋଗେଶ—ଆପଣଙ୍କ ପାଖରେ ରହିବାକୁ ମତେ ଭଲ ଲାଗୁଚି । ଆଜ୍ଞା ! ମୁଁ ଏଇଠି ଛିଡ଼ା ହେଇଚି; ସାଙ୍ଗ ହେଇ ଯିବା ।

ସେଠ୍‌ଜୀ—ବେଆଦବ୍, ତୁମ୍ ଶୁଣ କୋଣକେ ? ଯାଓ, ଭାଗୋ ୟହାଁସେ ।

ଯୋଗେଶ – ହାଁଜୀ, ହାଁଜୀ—

(ଅନିଚ୍ଛାରେ ପ୍ରସ୍ଥାନ । ପ୍ରବେଶ କଲେ ସବିତା; ସେଠ୍‌ଜୀ ନମସ୍କାର କଲେ)

ସେଠ୍‌ଜୀ—ଜୟ୍‌ଗୋପାଳଜୀକୀ, ମା'ଜୀ !
ସବିତା—ନମସ୍କାର, ବସନ୍ତୁ । ଆପଣ କିମିତି ହଠାତ୍ ଏ ଘରେ ପାଦ ଦେଲେ ?
ସେଠ୍‌ଜୀ—କୋଣ କହୁଚ ମା'ଜୀ ? ଜମିଦାର ସାହେବ ଯେବ ଥିଲା, ଉନ୍‌କା ମେହେର୍‌ବାନିସେ ମୁଇଁ ଏଠେଁ ଛୋଟାସା ଦୁକାନ୍ ଖୁଲିଥିଲା ।
ସବିତା—ହଁ, ମୁଁ ସବୁ ଜାଣେ ଗଣପତି ! ବାବୁଙ୍କର ସବୁପ୍ରକାର ସାହାଯ୍ୟ ନେଇ ବ୍ୟବସାୟ ଆରମ୍ଭ କଲ; ଶେଷରେ ତୁମେ ହେଲ ଲକ୍ଷପତି, ଆଉ ଆମର ଜମିଦାରୀ ଚାଲିଯାଇ ଆମେ ହେଲୁ ଗରିବ । ସଂସାର ତ ଏମିତି ଚାଲିଚି ।
ସେଠ୍‌ଜୀ—ହାଁ, ଯେ୍ୟ ଯେ ଚେଖା ଚେଖା ବାତ୍ କହିଲା ମା'ଜୀ । ଟକା ଗଡ଼ି ଯାଉଛନ୍ତି; କଭି ନିଚେ, କଭି ଉପର୍ । ହେ-ହେଃ, ମଗର ଇଜ୍ଜତ୍ ଆବ୍ରୁ ବଡ଼ି ଚିଜିଷ । ରୂପିଆତୋ ସବ୍ କମାଉଚି, ହେଲେ ଇଜ୍ଜତ୍ କେତେ ଜଣଙ୍କର ଅଛି ?
ସବିତା—ସେ କଥା ସତ ସେଠ୍‌ଜୀ ! ଟଙ୍କା ତ କର୍ପୂର ଭଳି ଉଡ଼ିଗଲା; ଖାଲି ଇଜ୍ଜତକୁ କନାଖଣ୍ଡିକ ଭଳି ଧରି ରଖିଚି ।
ସେଠ୍‌ଜୀ—ବିଲ୍‌କୁଲ୍ ଚେଖା, ବିଲ୍‌କୁଲ୍ ଠିକ୍; ମଗର୍ ସେ କନାଟା ଫାଟିଗଲା ମା'ଜୀ !
ସବିତା—କନାଟା ଫାଟିଗଲା ? କ'ଣ କହୁଚ ଗଣପତି ?
ସେଠ୍‌ଜୀ—ଯେ୍ୟ, ଯୋ' ଇଜ୍ଜତ୍ କନା କଥା କହୁଥିଲନା, ସେଇ ଇଜ୍ଜତ୍ କଥା ମୁଇଁ କହୁଚି । ଆପଣଙ୍କ ଲେଡ଼କ୍ କାମ୍ ହେଲାନି ଏଇଟା ।
ସବିତା—କେଉଁ କାମ କଥା କହୁଚ ତୁମେ ?

ସେଠ୍‌ଜୀ—ଏଇ ଶାଦ୍ଧ କଥା କହୁଚ । ହେଃ ହେଃ, ଶୁଭ ବାବୁର ଶାଦ୍ଧ ହେଇଗଲାନା ?

ସବିତା—ହଁ, ଗରିବ ଘରୁ ଝିଅଟିଏ ଆଣି ଶୁଭକୁ ବାହା ଦେଇ ଦେଲି । ସେ ତ ପ୍ରାୟ ତିନି ମାସ ହେଲାଣି ।

ସେଠ୍‌ଜୀ—ହାଁ, ସେଇ ଶାଦ୍ଧ କଥା କହୁଚ ମା'ଜୀ ! ହେଃ ହେଃ, ଝିଅଟା ଗରିବ ଘରର ନୁହେଁ, ବେଶ୍ୟା ଘରର ।

ସବିତା—ଗଣପତି ? (ଚିତ୍କାର କରି ଉଠିଲେ)

ସେଠ୍‌ଜୀ—ହେଃ—ହେଃ—ହେଃ; ଆପଣ ଜମିଦାର ଘର । ଖାନଦାନି ଅଛି, ଇଜ୍ଜତ୍ ଅଛି; ହାମେ ଆପଣଙ୍କୁ ଖାତିର୍ କରୁଚି । ମଗର୍ ଏ ଗ୍ରେଟା କାମ୍—ଛେଃ ଛେଃ—

ସବିତା—ଚୁପ୍‌କର୍, ଚୁପ୍‌କର୍ ତୁମେ ! ଜାଣ ତୁମେ କାହା କଥା କହୁଚ ? ମିଶ୍ର ଘରର ବୋହୂ ନାଁରେ ଏତେ ବଡ଼ ଅପବାଦ ?

ସେଠ୍‌ଜୀ—ମଗର୍ ମୁଇଁ ସଚ୍ କହୁଚ ମା'ଜୀ ? ମୁଇଁ ତାକେ ଆପଣା ଆଖିରୁ ଦେଖିଚି । ସେଇ ଲଡ଼କୀ ଯେ ନାଚ ଗା'ଣା କରେ, ତା'ର ନାମ୍ ଚନ୍ଦ୍ରିକା ।

ସବିତା—ମିଛ, ଭୁଲ୍, ଏସବୁ ଭୁଲ୍ । ତୁମେ ଚାଲିଯାଅ ଗଣପତି ! ମୁଁ ଆଉ କୌଣସି କଥା ଶୁଣିବାକୁ ପ୍ରସ୍ତୁତ ନୁହେଁ ।

ସେଠ୍‌ଜୀ—ଚୌଖା ବାତ୍ ! ମୁଇଁ ଯାଉଚି, ମଗର୍ ମୋର କଥା ବିଲ୍‌କୁଲ୍ ସଇଚ୍ ଅଛି ମା'ଜୀ ! କଭି ନା କଭି ଆପଣ ଜରୁର୍ ଜାଣିବ ।

ସବିତା—ଚାଲିଯାଅ, ଚାଲିଯାଅ ଏ ଘରୁ । ଖୁବ୍ ବଢି ଗଲଣି ତୁମେ । ଏବାର ବଦାଯୁ ନଅ । ତୁମର ସାହସ ଦେଖି ମୁଁ

ଆଶ୍ଚର୍ଯ୍ୟ ହେଉଚ । ମୋ'ର ସଜ୍ଜଳକ୍ଷ୍ମୀ ବୋହୂ ନାଁରେ ଅପବାଦ ଦବାକୁ ତୁମ୍ଭର ସାହସ ହେଲ ?

ସୀତା—(ପ୍ରବେଶ କରୁ କରୁ) ସେଠ୍ଜୀ ମିଛ କହି ନାହାନ୍ତି ମାଉସୀ ତାଙ୍କ କଥା ଅକ୍ଷରେ ଅକ୍ଷରେ ସତ ।

ସବିତା—ସୀତା ? ତୁ ମଧ ମୋ ବୋହୂ ନାଁରେ······

ସୀତା—ସତ୍ୟକୁ ଆବରଣ ଦେଇ କିଛି ଲାଭ ନାହିଁ ମାଉସୀ !— ସେଠ୍ଜୀ ପ୍ରକୃତ କଥା କହିଛନ୍ତି । ଦେବଦାଦା ତୁମକୁ ଭୁଲେଇ ଏ ଷଡ଼ଯନ୍ତ୍ର କରିଛନ୍ତି ।

ସବିତା—ଦେବ ଏ କଥା ଜାଣିଶୁଣି କରିଚ ? ଦେବ ମୋ ବିରୁଦ୍ଧରେ ଷଡ଼ଯନ୍ତ୍ର କରିଚ ? ନା-ନା, ମୁଁ ଯେ ବିଶ୍ୱାସ କରି ପାରୁନି ।

ସେଠ୍ଜୀ—ମା'ଜୀ ! ମଗର୍ ବାତ୍ ବିଲ୍କୁଲ୍ ସଚ୍ ଅଛି । ମୁଇଁ— ଖୋଦ୍ କେତେଥର ଚନ୍ଦ୍ରକାର ନାଚଗାଣା ଦେଖିଚ; ସୋ ସୋ ରୁପିଆ ଦେଇଚ ।

ସବିତା—ବନ୍ଦକର୍, ବନ୍ଦକର୍ ଗଣପତି ! ସମସ୍ତେ ମିଶି ମତେ ପାଗଳ କରି ଦିଅନା । ମୋର ପୂଜା-ବ୍ରତ, ମୋର ବୋହୂ ନାତି, ସବୁ କ'ଣ ଭୁଲ୍ ? ସବୁ କ'ଣ ଖାଲି ସ୍ୱପ୍ନ···

ସୀତା—ଆପଣ ଦେବ ଦାଦାଙ୍କୁ ଡାକି ପଚାରିଲେ ତ ସବୁ କଥା ପରିଷ୍କାର ହେଇଯା'ନ୍ତା ।

ସବିତା—ନା-ନା, ମୁଁ ସହି ପାରିବିନି ସୀତା ! ଯଦି ପ୍ରକୃତରେ ଏ କଥା ସତ ହେଇଥାଏ, ତେବେ ମୁଁ ସହି ପାରିବିନି । ଠାକୁରେ- ହେ ମାଧବ, ଏଥି କ'ଣ ଗୋଟାଏ ଅଛୁଆଁ, ପତିତା···

ସେଠ୍ଜୀ—ଆରେ ମାଁ'ଜୀ ! ଘବଡ଼ାନେସେ କ୍ୟା ହୋଗା ? ଉସ୍କୋ ଘରସେ ମାର୍କେ ଭଗାଇଏନା ? ଔର୍ ଆପଣ ଯାଇ ପ୍ରାୟଶ୍ଚିତ୍ତ କର୍—

ସବିତା—ପ୍ରାୟଶ୍ଚିତ୍ତ ! ପଞ୍ଚଗବ୍ୟ ସେବନ କରି କେତେଦିନ ଉପାସ ବ୍ରତ କଲେ ପୁଣି ଯାଇ ଶୁଦ୍ଧ ହେବ କେଜାଣି ? ଛି-ଛି-ଛି, ଠାକୁରେ ଏଇୟା ନେଲ ? ଶେଷରେ ଏଇୟା ବିଚାର କଲ ? ସବୁ ଅପବିତ୍ର ହୋଇଗଲା; ସବୁ ନଷ୍ଟ ହୋଇଗଲା (ପ୍ରସ୍ଥାନ)

ଗଣପତି—ମୁଇଁ ତେବେ ଆସୁଛି ବୈଦ୍ୟନାଥ ! ମାଁଙ୍କୁ ଶିପାଜଭ୍ କରେ, ହାଁ ? ଜୟ ରାମଜୀ କି ! (ପ୍ରସ୍ଥାନ ଉଦ୍ୟମ)

ଦେବ—(ପ୍ରବେଶକରି ଗଣପତିଙ୍କୁ ଦେଖି ଚମକି) ଆରେ ସେଠଜୀ, ତୁମେ ଏଠି କୋଉ ମତଲବ୍‌ରେ ?

ଗଣପତି—ବାଃ-ବାଃ, ଗୁମାସ୍ତା ବାବୁ କମାଲ୍ କରିଛ । ଜମିଦାର ବାବୁକା ଖାନଦାନ୍‌ରେ ଏକ୍ ବେଶ୍ୟାକୁ……

ଦେବ—ସେଠ୍‌ଜୀ, ଚୁପ୍‌କର୍, ଚୁପ୍‌କର୍ ତୁମେ ।

ସେଠ୍‌ଜୀ—ହେଃ-ହେଃ-ହେଃ, ଜୟ ରାମଜୀ କି ! (ପ୍ରସ୍ଥାନ)

ଦେବ—ମା କାହାନ୍ତି ?

ସୀତା—ମାଉସୀ ଏ ଖବର ଶୁଣି ପାଗଳୀଙ୍କ ଭଳି ଯାଇଛନ୍ତି ପ୍ରାୟଶ୍ଚିତ୍ତ କରିବାକୁ; କିନ୍ତୁ ଆପଣ ଯେ କ'ଣ କଲେ ଦେବ ଦା ? ଜାଣିଶୁଣି ଗୋଟାଏ ଭଦ୍ର ପରିବାରରେ କଳଙ୍କ ବୋଳିଦେଲେ ? ଆପଣଙ୍କର କ'ଣ ଲାଭ ହେଲା ? ଯୋଉ ପରିବାରରେ ଆପଣ ଆଜୀବନ ଗୁଲାମି କରି ଆସିଲେ, ଆଜି ସେଇ ପରିବାର ପ୍ରତି ଏଡ଼େ ବଡ଼ ବିଶ୍ୱାସ ଘାତକତା କରି ପାରିଲେ ?

ଦେବ—ବିଶ୍ୱାସ ଘାତକତା ?

ସୀତା—ଖାଲି ବିଶ୍ୱାସ-ଘାତକତା ନୁହେଁ; ବେଇମାନି, ନିମକହାରାମୀ ।

ଦେବ—ସୀତା ?

ସ୍ୱାତୀ—ଚୁପ୍ କରନ୍ତୁ; ଆପଣଙ୍କ ଭାଗ୍ୟ ଭଲ ଏଠି ମାଉସୀ ଉପସ୍ଥିତ ନାହାନ୍ତି । ନ ହେଲେ ସେ ଆପଣଙ୍କୁ ଠିକ୍ ଠିକ୍ କରି ଦେଇଥାନ୍ତେ । ଆଜି ତାଙ୍କର ଆଦେଶରେ ମୁଁ ଏଠି ଛିଡ଼ା ହୋଇଚି କୈଫିୟତ ମାଗିବା ପାଇଁ । ପ୍ରତ୍ୟେକ ପ୍ରଶ୍ନର ସଠିକ ଉତ୍ତର ଆଜି ଆପଣଙ୍କୁ ଦବାକୁ ପଡ଼ିବ ।

ଦେବ—ବେଶ୍ ! ସେଥିଲାଗି ମୁଁ ପ୍ରସ୍ତୁତ ଅଛି । ମୁଁ ପଚିଶ-ବର୍ଷର ବିସ୍ତସ୍ତ ଗୁମାସ୍ତା । ଏ ଘରର ଦାନା ପାଣିରେ ବାଲ ପାଚିଚି—ଆଜି ମତେ ବେଇମାନ୍, ନିମକହାରାମ୍ ବୋଲି ଯେତେବେଳେ ତୁମେ କହୁଚ, ମତେ ଯେତେବେଳେ ଅବିଶ୍ବାସ କରୁଚ, ଏ ଘର ପ୍ରତି ମୋର ମଧ୍ୟ ଆଉ ଲୋଭ ନାହିଁ । ପଚାର, କ'ଣ ପଚାରିବ ।

ସ୍ୱାତୀ—ଚନ୍ଦ୍ରିକା ଜଣେ ବେଶ୍ୟା, ଏକଥା ଆପଣ ଜାଣନ୍ତି ?

ଦେବ—ଏଇଟା ତୁମର ପ୍ରଥମ ଭୁଲ୍ । ଚନ୍ଦ୍ରିକା ଜଣେ ନାଚବାଲୀ, ନାଚବାଲୀ ଆଉ ବେଶ୍ୟା ଭିତରେ ବହୁତ ପ୍ରଭେଦ ଅଛି ।

ସ୍ୱାତୀ—ସେ ପ୍ରଭେଦ ବୁଝିବାର ଦରକାର ମୋର ନାହିଁ । ସେ ଜଣେ ପତିତା, ସେତିକ ଜାଣିଲେ ମୋର ଯଥେଷ୍ଟ ହେବ ।

ଦେବ—ହଁ, ଚନ୍ଦ୍ରିକା ଜଣେ ରୂପ ବ୍ୟବସାୟୀ ।

ସ୍ୱାତୀ—ଆପଣ ଜାଣିଶୁଣି ତାକୁ ଏ ଘରକୁ ଆଣିଚନ୍ତି କାହିଁକି ?

ଦେବ—ତୁମର ସ୍ଥାନ ପୂରଣ କରିବାକୁ ।

ସ୍ୱାତୀ—ଦେବ ଦା ! କି ଆସ୍ପର୍ଦ୍ଧା ! ମୋର ସ୍ଥାନ ଜଣେ ପତିତା ପୂରଣ କରି ପାରିବ ବୋଲି ଆପଣ ବିଶ୍ୱାସ କରି ପାରିଲେ ?

ଦେବ—ସେ ବିଶ୍ୱାସ ମୋର ମିଛ ନୁହେଁ । ତୁମେ ଯଦି ଶୁଭଙ୍କୁ ବିବାହ କରି ତାଙ୍କୁ ପ୍ରକୃତିସ୍ଥ କରିବାର ଦାୟିତ୍ୱ ନେଇଥାନ୍ତ, ତେବେ ଆଉ ଜଣଙ୍କୁ ଆଣିବାର ପ୍ରୟୋଜନ ହୋଇନଥାନ୍ତା ।

ଏବେ ତ ଆଖିରେ ଦେଖୁଛ ଯେ ଚନ୍ଦ୍ରିକା ତୁମର ସ୍ଥାନ ସଫଳତାର ସହିତ ପୂର୍ଣ୍ଣ କରି ପାରିଛି । ମା ଭାବରେ ଶୁଭକୁ ଖୁଆଇ, ପିଆଇ ଆଦର କରିଛି; ସେବିକା ଭାବରେ ସେବା ସୁଶ୍ରୂଷା କରିଛି; ପତ୍ନୀ ଭାବରେ ଶୁଭର କାମନାକୁ ଶାନ୍ତ କରିଛି—ଆଉ ତୁମରି ଭାଷାରେ ପତିତା ଭାବରେ ତା'ର ମନ ଭୁଲେଇଛି ।

ସୀତା—ଓଃ ! ତାକୁଇ ବୋହୂ କରି ଏ ଘରେ ସବୁଦିନ ରଖିବାର ମତଲବ ଅଛି, ନା ?

ଦେବ—ତା' କ'ଣ କେବେ ସମ୍ଭବ ?

ସୀତା—ତେବେ ?

ଦେବ—ସେ ଆସିଥିଲା ଶୁଭକୁ ଭଲ କରିବା ପାଇଁ । ତା'ର କାମ ଶେଷ ହୋଇଛି; ସେ ଏଥର ଚାଲିଯିବ ।

ସୀତା—ମାତ୍ର ତା'ର ବାହାଘର ? ସେ କ'ଣ କଚେରୀରେ ଛିଡ଼ା-ହୋଇ ତାର ପ୍ରାପ୍ୟ ଆଦାୟ କରିବାକୁ ଚେଷ୍ଟା କରିବନି ? ସେ ବିଷୟରେ କେବେ ଭାବି ଦେଖିଚନ୍ତି ?

ଦେବ—ସେଇ ଭାବନାଟା ହିଁ ମତେ କଷ୍ଟ ଦେଉଛି ସୀତା ! ତା'ର ଉଚିତ ପ୍ରାପ୍ୟରୁ ମୁଁ ଯେ ତାକୁ ଜାଣିଶୁଣି ବଞ୍ଚିତ କରିବି, ସେଇ ଚିନ୍ତାହିଁ ମୋର ବିବେକକୁ ସବୁବେଳେ ଦଂଶନ କରୁଛି । ଚନ୍ଦ୍ରିକା ଦେହ-ମନ-ପ୍ରାଣ ଦେଇ ଏ କୂଳର ପ୍ରଦୀପକୁ ସୁସ୍ଥ କରିଛି, ଶୁଭକୁ ନୂଆ ଜୀବନ ଦେଇଛି; ମାତ୍ର ମୁଁ ବିନ-ମଧ୍ୟରେ ତା' ବିରୁଦ୍ଧରେ ଷଡ଼ଯନ୍ତ୍ର କରିଛି, ତା'ର ମୂଳ ଉତ୍ପାଟନର ବ୍ୟବସ୍ଥା କରିରଖିଛି ।

ସୀତା—ତା'ର ମୁହଁ ବନ୍ଦ କରିବାକୁ ଆପଣ କ'ଣ ବ୍ୟବସ୍ଥା କରିଚନ୍ତି ଶୁଣେ ? ତା ଦ୍ୱାରା କଳଙ୍କ ପ୍ରଚାର କ'ଣ ବନ୍ଦ ହୋଇପାରିବ ?

ଦେବ—ସୀତା ! ଜମିଦାରୀର କୁଟମାନ୍ତ ଭିତରେ ମୁଁ ପଚାଶ ବର୍ଷ ଚଳି ଆସିଛି । ଏତିକ ବୁଦ୍ଧି କ'ଣ ମୋର ନାହିଁ ? ତୁମେ କିଛି ନବୁଝି ମତେ ବେଇମାନ, ନିମକ୍-ହାରାମ ବୋଲି କହିଦେଲ; ମାତ୍ର ଏ ପରିବାର ସହିତ ମୁଁ ଯେ କେତେ ଘନିଷ୍ଠ ଭାବରେ ସମ୍ପୃକ୍ତ, ବୁଝିବାକୁ ଚେଷ୍ଟା କରିଛ ? ଅନ୍ୟ ଉପାୟ ନ ପାଇ ମୁଁ ଅବଶ୍ୟ ଚନ୍ଦ୍ରକାକୁ ଘରକୁ ଆଣିଛି, ଲୋକଙ୍କ ମୁହଁ ବନ୍ଦ କରିବାକୁ ଲୋକ ଦେଖାଣିଆ ଖେଳ-ବାହାଘର କରେଇବାକୁ ବାଧ ହେଲି । ମାତ୍ର ସେ ବାହାଘରର ସାକ୍ଷୀ ଆଜି କେହି ନାହାନ୍ତି । ସାକ୍ଷୀ ହେବ କିଏ ? ଆଉ; ଗୋଟାଏ ପତିତାର କଥାକୁ ବା ଆମର ବିଚାରାଳୟ ଏତେ ଗୁରୁତ୍ୱ ଦେବ କାହିଁକି ? ନର୍ଯ୍ୟାତନା ଆଉ ଅପମାନ ଭୟରେ ଚନ୍ଦ୍ରା କେବେବିହେଲେ କୋର୍ଟ କଚେରୀର ଆଶ୍ରୟ ନେବାକୁ ସାହାସ କରିବନି ।

ସୀତା—କିନ୍ତୁ ସେ କ'ଣ ସ୍ୱେଚ୍ଛାରେ ଏ ଘରୁ ବାହାରିଯିବ ? ସେ ଯେ ଆକାଶ-କୁସୁମର ସ୍ୱପ୍ନ ଦେଖୁଛି ।

ଦେବ—ଚନ୍ଦ୍ରକାର ସ୍ୱପ୍ନ କେବଳ ତା'ର ବ୍ୟକ୍ତିଗତ । ସେ ଚିନ୍ତା ମୁଁ କାହିଁକି କରିବି ? ମୋର ଚୁକ୍ତି ଅନୁସାରେ ଯୋଉ ଦିନ ତା'ର କାମ ଶେଷ ହୋଇଯିବ, ସେଦିନ ସେ ନିଜ ଇଚ୍ଛାରେ ଏ ଘରୁ ବିଦାୟ ନେବ । କିନ୍ତୁ ମୁଁ ଖାଲି ଭାବୁଛି ଶୁଭର କଥା; ଚନ୍ଦ୍ରାର ଅନୁପସ୍ଥିତରେ ଏକାକି ତା'ର ସ୍ଥାନ ପୂରଣ କରିବ ? ଶୁଭର ସେବିକା ହେବ କିଏ ?

ସୀତା—କାହିଁକି, ମୁଁ କ'ଣ ସେ କାମ କରି ପାରିବିନି ?

ଦେବ—ହିଁ ହିଁ, ତୁମେ ପାରିବନି କାହିଁକି ? ସୁସ୍ଥ ହେଲା ପରେ ଯେ କେହି ତା'ର ଦାୟିତ୍ୱ ନେଇପାରିବ । ସେ ଆଉ କଷ୍ଟ କାମ କ'ଣ ?

ମନ୍ତ୍ରୀ—(ପ୍ରବେଶି) ସୀତା ଅପା ! ଦେବଦା ! ଶୀଘ୍ର ଆସ; ବୋଉ ଠାକୁର ଘରେ ଅଚେତା ହୋଇଯାଇଛ । ଶୀଘ୍ର ଆସ; ଠାକୁରଙ୍କୁ ଡାକ··· (ବ୍ୟସ୍ତତା ସହେଲ—)

···ଅ ନ୍ଧା ର···

———

## ନବମ ଦୃଶ୍ୟ

[ ଛାତ । ଦନ । ଶୁଭ ସମ୍ପୂର୍ଣ୍ଣ ସୁସ୍ଥ ଓ ସଜ୍ଜିତ; ଚନ୍ଦ୍ରିକା ପିଲଙ୍କେ ମୋଜାଟିଏ୍ୱଲ୍‌ରେ ବୁଣୁଥାଏ ]

ଶୁଭ—ନା-ନା ମଧୁ ! ତୁମେ ନଗଲେ ମୁଁ ଯାଇ ପାରିବନ । ମୋର ସାହସ ହେଉନ ।

ଚନ୍ଦ୍ରିକା—ସାହାସ ହଉନ ? ବଜାରରୁ ଯାଇ ବୁଲ ଆସିବା ଲାଗି ସାହାସର ଦରକାର କ'ଣ ?

ଶୁଭ—ଏକୁଟିଆ ଯିବାକୁ କେମିତ ଭୟ ଲଗୁଛ ମଧୁ ! ରାସ୍ତାରେ ଲୋକମାନେ ମତେ ଚାହିଁବେ ?···

ଚନ୍ଦ୍ରିକା—ହଁ, ତା' ନଶ୍ଚୟ ଚାହିଁବେ ? ଖାଲି ଚାହିଁବେ କ'ଣ ? କେତେଜଣ ଆସି ମଧ କଥାବାର୍ତ୍ତା କରିବେ; ତୁମର ସ୍ୱାସ୍ଥ୍ୟୋନ୍ନତି ଲାଗି ଶୁଭେଚ୍ଛା ଜଣାଇବେ । ଆଜ ପ୍ରଥମ ଥର ଲାଗି ତୁମେ ବାହାରକୁ ଯାଉଛ···

ଶୁଭ—ସେଇଥି ପାଇଁ ମତେ ଏକୁଟିଆ ଯିବାକୁ ଭଲ ଲାଗୁନି । ଏଇ ଥରଟିଏ ତୁମେ ମୋ ସାଙ୍ଗରେ ଚାଲ; ତା'ପରେ ମୁଁ ଏକୁଟିଆ ଯିବାଆସିବା କରିବି ।

ଚନ୍ଦ୍ରିକା—ଦେଖୁଚ ମୋର କେତେ କାମ ପଡ଼ିଚି । ତୁମ ସାଙ୍ଗରେ ବୁଲିଯିବି କେମିତି ?

ଶୁଭ—ହଉ, ତା'ହେଲେ କାମ ସାରିଦିଅ, ସାଙ୍ଗହୋଇ ଯିବା ।

ଚନ୍ଦ୍ରିକା—ନା-ନା, ସାଙ୍ଗରେ ଯିବାକୁ ମତେ ବେଳ ହବନି । ତମେ ଶୀଘ୍ର ଯାଇ ବଜାରରୁ ଉଲ୍ ପାଉଣ୍ଡେ କିଣି ନେଇଆସ । ଦିନ ଥାଉ ଥାଉ ଯାଅ; ସନ୍ଧ୍ୟା ଆଗରୁ ଫେରି ଆସିବ ।

ଶୁଭ—ସେ ଉଲ୍‌ରେ ଗୁଡ଼ିଏ ଗୁଡ଼ିଏ ମୋଜା, ଗୁଡ଼ିଏ ଟୋପିଟିଏ, ଆଉ ଗୁଡ଼ିଏ ଜାମା ଦ'ଟା ତିଆରି କରିବ ନା ?

ଚନ୍ଦ୍ରିକା—ହୁଁ, ତମେ ଗଲ । ଏଇ ନିଅ, ଟଙ୍କା ରଖ । ରିକ୍‌ସାରେ ଯିବ । ଆଉ ଉଲ୍ କିଣି ସେଇ ରିକ୍‌ସାରେ ଫେରି ଆସିବ ।

ଶୁଭ—ଆଚ୍ଛା, ମତେ ବଜାରକୁ ପଠେଇବାକୁ ତୁମର ଏତେ ଜିଦ୍ କାହିଁକି ଶୁଣେ ?

ଚନ୍ଦ୍ରିକା—ଆଜି ପରା ଆମ ଦୁହିଁଙ୍କର ପରୀକ୍ଷା ।

ଶୁଭ—ପରୀକ୍ଷା ?

ଚନ୍ଦ୍ରିକା—ହିଁ; ତୁମର ଦେହ-ଖରାପ ଥିଲା, ତିନିମାସ ପରେ ତୁମେ ଆଜି ସମ୍ପୂର୍ଣ୍ଣ ସୁସ୍ଥ ହୋଇ ବାହାରକୁ ଯିବ, ସର୍ବସାଧାରଣଙ୍କ ସାଙ୍ଗରେ ମିଶିବ । ଆଜିର ପରୀକ୍ଷାରେ ଯଦି ତୁମେ ପାସ୍‌କରି ଯାଅ ତେବେ ତୁମେ ଏକଦମ୍ ଭଲ ହୋଇଗଲଣି ବୋଲି ଧରିଯିବ । ...

ଶୁଭ—ଆଉ ତୁମର ପରୀକ୍ଷା କ'ଣ ?

ଚନ୍ଦ୍ରିକା—ମୋର ପରୀକ୍ଷା ? ତୁମେ ଯଦି ସମ୍ପୂର୍ଣ୍ଣ ଆରୋଗ୍ୟ ହୋଇ ଯାଇଥାଅ......

ଶୁଭ—ତା'ହେଲେ କ'ଣ ହେବ ?

ଚନ୍ଦ୍ରିକା—ତା ହେଲେ ? ତା ହେଲେ...ନା-ନା, ତା' ହେଲେ ଆଉ କ'ଣ ? ତା'ହେଲେ ଦୁର୍ଦ୍ଦିନର ପାଣ୍; ହଁ, ଦୁର୍ଦ୍ଦିନର ପାଣ୍...(କାନ୍ଦିଲେ)

ଶୁଭ—ମଧୁ, ତୁମେ କାନ୍ଦୁଛ ? ଆଜି ଭଳି ଶୁଭଦିନରେ ତ ତମର ହସିବାର କଥା । ତୁମର ସାଧନା ସଫଳ ହୋଇଛି... ମତେ ତୁମେ ଭଲକରି ପାରିଛ...ଏ ତ ଆନନ୍ଦର କଥା... ଗର୍ବର କଥା...

ଚନ୍ଦ୍ରିକା—ହଁ ହଁ, ଆନନ୍ଦର କଥା; ମୋର ସ୍ୱାମୀଙ୍କୁ ମୁଁ ନୂଆ ରୂପରେ ସଜେଇଛି, ନୂଆ କରି ଗଢ଼ିଛି...ଏ ମଣିଷରେ ଆଉ କାହାରି ଭାଗ ନାହିଁ । ଆମ ଭିତରେ ଆଉ କାହାରି ସ୍ଥାନ ରହି ପାରେନା ।

ଶୁଭ—ମଧୁ, ତୁମ ଆଖିରେ ଲୁହ ? ଜାଣ, ଏଇ ଟୋପାଏ ଲୁହରେ ଆଗ୍ନେୟ ଗିରିର କେତେ ଲାଭା ଲୁଚି ରହି ରହିଛି ? ଆଜି ଭଳି ଦିନରେ ପ୍ରକୃତିକୁ ଭୂମିକମ୍ପ ସାଜେନା । ପ୍ରକୃତି ଠାରୁ ଶକ୍ତି ନେଇ ପୁରୁଷ ଆଜି ସତେଜ, ସୁସ୍ଥ । ପୁରୁଷର ଏଇ ଆନନ୍ଦରେ ପ୍ରକୃତି ସାଜିବ ବସନ୍ତ ବେଶରେ; ଗାଇବ କୋକିଳ କଣ୍ଠରେ, ନାଚିବ ମୟୂର ଛନ୍ଦରେ ।

ଚନ୍ଦ୍ରିକା—ସେ ଦିନ କ'ଣ ଆସିବ ? ଆଗୋ, ମୋର ଏ ଅଭିନୟ ଜୀବନରେ ସେ ଶୁଭଦିନ କ'ଣ ଆସିବ ?

ଶୁଭ—ଏ ସବୁ କ'ଣ କହୁଛ ମଧୁ ? ଏଥିରେ ପ୍ରଶ୍ନବାଚୀ କାହିଁକି ? ଆମେ ଯେ ବିବାହ-ବନ୍ଧନରେ ବନ୍ଧା ।

ଚନ୍ଦ୍ରିକା—ହଁ ହଁ, ତୁମେ ଠିକ୍ କହୁଚ । ତୁମେ ଟିକିଏ ବସ; ମୁଁ ପାଦୁକ ନେଇ ଆସେ । (ପ୍ରସ୍ଥାନ ଓ ପୁଣି ପ୍ରବେଶ) ଏଇନଅ, ଠାକୁରଙ୍କ ପାଦୁକ । (ଶୁଭ ସେବା କଲା) ଏଥର ଟିକିଏ ବୁଲି ଆସ; ଘଡ଼ି ଆଗରୁ ଫେରି ଆସିବ ।

ଶୁଭ—ଯଥା ଆଜ୍ଞା ଦେବୀ ! ମୁଁ ତେବେ ଚାଲିଲି । (ଯାଉଥିଲା)

ଚନ୍ଦ୍ରିକା—ତୁମେ ଫେରି ଆସିବ ତ ? ମୋର ଯେ ଆଉ କେହି ନାହିଁ ।

ଶୁଭ—ମୋର ଆଉ କିଏ ଅଛି ? ଶାନ୍ତି ଆଉ ଆନନ୍ଦର ଏକମାତ୍ର ସ୍ଥଳ ହେଲ ତୁମେ । ତୁମକୁ ଟିକିଏ ଦେଖିବ ବୋଲି ଅଟକି ଯାଇଥିଲି । ଆଚ୍ଛା ମୁଁ ଆସେ ।

ଚନ୍ଦ୍ରିକା—ଆସ ।

( ଶୁଭ ପ୍ରସ୍ଥାନ । ଚନ୍ଦ୍ରିକା ଯାଇ ଜଳ ଓ କଣ୍ଢା ଆଣି ବୁଣି ବସିଲା । ପ୍ରବେଶ କଲେ ସ୍ୱାତୀ ଓ ଦେବ । )

ଚନ୍ଦ୍ରିକା—ଆପଣ ? ଆଜି ତାଙ୍କୁ ପ୍ରଥମ ଥର ଲାଗି ଏକୁଟିଆ ବଜାରକୁ ପଠେଇ ଦେଇଚି । ସେ ଏକଦମ୍ ଭଲ ହୋଇ-ଗଲେଣି । (ଦୁହିଁଙ୍କୁ ନୀରବ ଦେଖି) କ'ଣ ହେଇଚି ? ଆପଣ-ଙ୍କଠୁ କହୁନାହାନ୍ତି କାହିଁକି ?

ଦେବ—ଦେଖ୍ ଚନ୍ଦ୍ରିକା ! ତୋ ସାଙ୍ଗରେ ମୋର ଜବାବ ଥିଲା ଶୁଭ ଭଲ ହେଲା ପର୍ଯ୍ୟନ୍ତ···

ଚନ୍ଦ୍ରିକା—ନା-ନା, ମୁଁ ଯିବିନି । ଏ ଘର ଗୁଡ଼ କୁଆଡ଼େ ଯିବିନି । (ଯିବାକୁ ଉଦ୍ୟତ)

ଦେବ—(ବାଧା ଦେଇ) ଚନ୍ଦ୍ରା ! ମୁଁ ତତେ ଆଗରୁ କହିରଖିଚି; ଥରକୁ ଥର ସାବଧାନ କରି ଦେଇଚି, ତା'ପରେ ମଧ ତୁ ଯଦି ଅବାଧ ହେଉ, ତେବେ···

ଚନ୍ଦ୍ରକା—ମୁଁ ଯିବ କୁଆଡ଼େ ?

ସୀତା—କାହିଁକି ? ତୋର ସେଇ ପୁରୁଣା ଠିକଣାକୁ ?

ଚନ୍ଦ୍ରକା—ନା-ନା, ମତେ ଏଇଠି ରହିବାକୁ ଦିଅନ୍ତୁ । ଦାସୀ ହୋଇକି ହେଇ ରହିବି ପଛେ···

ସୀତା—ଚୁପ୍‌କର୍ । ଭଦ୍ର ଘରେ ତତେ କିଏ ସ୍ଥାନ ଦେବ ? କାହାର ଇଜତ୍‌କୁ ଭୟ ନାହିଁ ଯେ, ଗୋଟାଏ ପତିତାକୁ ଆଶ୍ରୟ ଦେବ ? ଦେବଦା ! ଚୁପ୍ ହୋଇ ଛିଡ଼ା ହୋଇଛନ୍ତି କ'ଣ ?

ଦେବ—ଚନ୍ଦ୍ରା ! କୌଣସି ଅପ୍ରୀତିକର ଦୃଶ୍ୟ ଘଟିବା ପୂର୍ବରୁ ନିଜ ଇଚ୍ଛାରେ ଚାଲି ଯା'—ନ ହେଲେ ଏ ବଂଶର ଆଭିଜାତ୍ୟ ଅକ୍ଷୁର୍ଣ୍ଣ ରଖିବା ଲାଗି ମୁଁ ଯେ କେତେ ନିର୍ମମ ହୋଇପାରେ··· ତା' ତୁ ସହ୍ୟ କରି ପାରିବୁନି ।

ଚନ୍ଦ୍ରକା—ମୋ ଉପରେ ନ ହେଲେ ବି ଏ ବଂଶର ଉତ୍ତରାଧିକାରୀ ଉପରେ ଦୟା କରନ୍ତୁ । ସେ ଯେ ମୋ ଦେହରେ ରୂପ ପାଉଛି ।

ସୀତା—ଚୁପ୍ କର ! ଗୋଟାଏ ବେଶ୍ୟାର ସନ୍ତାନ ପୁଣି ମିଶ୍ରବଂଶର ଉତ୍ତରାଧିକାରୀ ହେବ । ତୋର ଆସ୍ପର୍ଦ୍ଧା ତ କମ୍ ନୁହେଁ ? ଫୁଟ୍‌-ପାଥର ଭିକାରୁଣୀ ହୋଇ ରାଜମହଲର ସ୍ୱପ୍ନ !

ଚନ୍ଦ୍ରକା—ଦେବ ବାବୁ, ଦୟା କରନ୍ତୁ । ଅନ୍ତତଃ ସେ ଫେରି ଆସନ୍ତୁ, ତାଙ୍କଠୁ ବିଦାୟ ନେଇ···

ଦେବ—ଅସମ୍ଭବ; ଶୁଭ କ'ଣ ତତେ ଜାଣିଶୁଣି 'ବିଦାୟ ଦେଇ ପାରିବ ? ବରଂ ସେ ନଥିବା ଅବସ୍ଥାରେ ତତେ ଚାଲିଯିବାକୁ ହେବ । ଚାଲ···

ଚନ୍ଦ୍ରକା—ନା-ନା, ମତେ ସମୟ ଦିଅନ୍ତୁ । ଆଜି ଅଧଘଣ୍ଟାଏ ସମୟ ଦିଅନ୍ତୁ । ତାଙ୍କୁ ଥରଟିଏ ଦେଖି ମୁଁ ଚାଲିଯିବି ପଛେ···

ଗୀତା—ଦେବଦା, କ'ଣ କଥା ଶୁଣୁଚନ୍ତି ? ଏଇ ଦୁର୍ବଳତା ନେଇ ଏ ବଂଶର ସମ୍ମାନ ଆପଣ ରକ୍ଷା କରିବେ ? ବାହାର କରନ୍ତୁ ତାକୁ । ସ୍ୱାମୀଙ୍କୁ ରାସ୍ତା କଡ଼ରୁ ଡାକିଆଣି ଏ ପରିବାରରେ ଆଉ କେତେ ଅଶାନ୍ତି ସୃଷ୍ଟି କରିବେ ? ଆପଣ କ'ଣ ଏ ବଂଶକୁ ଧ୍ୱଂସ କରିଦବାକୁ ଚାହାନ୍ତି ?

ଦେବ—ନା-ନା, ଏ ବଂଶକୁ ଧ୍ୱଂସ କରିବା ପୂର୍ବରୁ ନିଜେ ମୁଁ ଧ୍ୱଂସ ହୋଇଯିବି ଗୀତା ! ଏ ପରିବାରର ଅଶାନ୍ତି ଦୂର କରିବାକୁ ମୁଁ ନିଜର ପରିବାରକୁ ଉତ୍ସର୍ଗ କରିପାରେ; ଚନ୍ଦ୍ରା ତ ଦୂରର କଥା···ଚାଲ ଚନ୍ଦ୍ରିକା, ଶୁଭ ଫେରିବା ଆଗରୁ ତତେ ଏ ଘରଛାଡ଼ି ଚାଲି ଯିବାକୁ ହବ । ଚାଲ···

ଚନ୍ଦ୍ରିକା—ନା ନା ଦେବ ବାବୁ ! ଗୀତା ଦେବୀ, ଆପଣଙ୍କ ପାଦ ଧରୁଚି, ମୋ ପ୍ରତି ଦୟା କରନ୍ତୁ; ତାଙ୍କ ସହିତ ପଦଟିଏ କଥା ହୋଇ ମୁଁ ଚାଲିଯିବି ।

ଗୀତା—ଚୁପ୍ କର···ଯା, ବାହାର୍···ଦେବଦା !

ଦେବ—ଚାଲ୍ ଚନ୍ଦ୍ରିକା···ଶୀଘ୍ର ଚାଲିଆ···

ଚନ୍ଦ୍ରିକା—ନା···ମତେ ଛାଡ଼ ଦିଅନ୍ତୁ···ଦୟା କରନ୍ତୁ···ତୁମେ କୁଆଡ଼େ ଗଲ ? ତୁମେ ଆସୁନ କାହିଁକି ? ଛାଡ଼ ଦିଅନ୍ତୁ···ଛାଡ଼ ଦିଅନ୍ତୁ ।

( ଚନ୍ଦ୍ରିକାର ବିକଳ ମିନତି କାହାରି କାନରେ ପହଞ୍ଚି ପାରିଲା ନାହିଁ । ଦେବ ଟାଣିନେଇ ଚାଲିଗଲେ )

* ଡ୍ରପ୍ *

INTERVAL

# ଦ୍ୱିତୀୟ ଅଙ୍କ

## —ପ୍ରଥମ ଦୃଶ୍ୟ—

[ କୋଠା ଘରର ଆଭ୍ୟନ୍ତର । ଦୁଇଟି ଚଉକି ଓ ଗୋଟିଏ ଗ୍ଲେଟ ଟେବୁଲ ପଡ଼ିଛ । ଦୁଇଟି ଦଶ ବାର ବର୍ଷର ଶିଶୁ ଅଧ ସନ୍ତର୍ପଣରେ ପ୍ରବେଶ କରୁଚନ୍ତି । ବେଶ ପରିପାଟି ଛଣ୍ଡା ହେଲେ ବି ଗୃହଚର୍ଯ୍ୟା-ପୂର୍ଣ୍ଣ । ସମସ୍ତଙ୍କ ହାତରେ ଫୁଲମାଳା ଓ ବିଭିନ୍ନ ପ୍ରକାର ଶସ୍ତା ସାମଗ୍ରୀ । ଆଗ ଦୁଇ ପିଲାଙ୍କର ସନ୍ତର୍ପଣ ଭାବ ଦେଖି ତୃତୀୟ ଶିଶୁଟି ବେପରୁଆ ଭାବେ ସେ ଦୁହିଁଙ୍କୁ ଟପିଯାଇ ପାଟିକରି ଉଠିଚି— ]

ମାଟିଆ—ସାର୍ ! ସାର୍ ! ଅଛନ୍ତି ସାର୍··· ?

ଲଟୁ—(ମାଟିଆକୁ ଭିଡ଼ି) ନବ ମାଟି ! କେଡ଼େପାଟି କରୁଚୁ ? ଏଠିକି କ'ଣ ଫେରିକରି ଆସିଚୁ ? ସାର୍ ପରା କହିଛନ୍ତି ଫେରି ଗଲାବେଳେ ଗରାଖଙ୍କୁ ପାଟିକରି ଡାକିବ; କାହା ଘରକୁ ଯଦି ନିଜ କାମରେ ଯାଅ···ଆସ୍ତେ ମୁଲମ୍ କରି ଘର ମାଲିକଙ୍କୁ ଡାକିବ—ଆସ୍ତେ ଡାକ ।

ନବନା—ଏ, ଆମ ସାର୍, ତାଙ୍କ ଦୁଆରେ ଗୋଟାଏ ବେହଗ ରଖୁ ନାହାନ୍ତି କାହିଁକି ?

ଲଟୁ—ଚୁପ୍ ! ଆମ ସାର୍ ଗୃକର ରଖିବେନି କାହାର ଗୃକରି କରିବେନି । ସେ ନିଜେ ସବୁ କରିବେ ।

ମାଟିଆ—ଓଃ, ଆମଭଳି ସ୍ୱାଧୀନ ବ୍ୟବସାୟ କରିବେ । ଛୁଞ୍ଚି ସୂତା, ପାଁରୁଟି, ଖସାଲଡୁ ଡାଲାରେ ଧରି, ରାସ୍ତାରେ ପାଟି କରିବେ—ଖସାଲଡୁ; ନଗାଇ ସବୁ (ପାଟିକଲା)

ସୁବ୍ରତ—(ଚନ୍ଦ୍ରିକାର ପୁଅ) ଡୋଣ୍ଟ୍‌ପାଟି ! ସାବଧାନ, ପିଛେ ହଟୋ, (ଶିଶୁମାନେ ତଥାନୁକରଣ) ଥାସ୍ । ହଇରେ ମାଟିଆ, ଏଇଟା କ'ଣ ବଜାର ହାଟ ହୋଇଚ ? ଖସାଲଡୁ କହି ପାଟି କରୁଚୁ ? ଏଇଟା ଭଦ୍ରଲୋକଙ୍କ ଘର ପରା ?

ଲଟୁ—ତାକୁ ମାଫ୍ କରନ୍ତୁ ସାର୍ ! ସେଇଟା ଏଇ ପ୍ରକୃତି ପାଇଁ ଥୋପି ଠଣା ହୋଇ ହଜାରେ ଖାଉଥିବ ।

ସୁବ୍ରତ—ହୁଁ ! ବାପାଙ୍କ ସ୍ୱାଗତ ଲାଗି କ'ଣ ସବୁ ଆଣିଚ ଦେଖି ?

ଲଟୁ—(ଆଗ୍ରହରେ) ମୋ ଫୁଲହାରଟା ଦେଖିଲେ ସାର୍ !

ନବନା—ସାର୍, ମୋ ଫୁଲହାର ଆଉ ଏଇ ନିଲମୀ ଟାଇ-ଟା ଦେଖିଲେ, କମିତି ହୋଇଚ ?

ମାଟିଆ—ସାର୍, ମୋ ଖସାଲଡୁ ତୁମେ ଖାଇଚନ୍ତି ? ଆଜି ଇସ୍-ପେଶିଆଲ୍, କାଜୁହଆ ଖସାଲଡୁ ଆଣିଚ ।

ସୁବ୍ରତ—ଓଃ-ତୋର ଭଲ୍ୟୁମ୍ ବଢ଼ିଗଲା···ମା' ଶୁଣିଲେ···

ଚନ୍ଦ୍ରିକା—(ପ୍ରବେଶି) କରେ ସୁବ୍ରତ ! ଏମାନେ କିଏ ? ଏତେ ପାଟି କାହିଁକି ?

ସୁବ୍ରତ—ଏମାନେ ସବୁ ମୋର ଷ୍ଟୁଡେଣ୍ଟ୍ । ବାପାଙ୍କୁ ସ୍ୱାଗତ ଜଣେଇବା ପାଇଁ ଆସିଚନ୍ତି ।

ଚନ୍ଦ୍ରିକା—ବା-ପା ? ʼ

ସୁବ୍ରତ—ତୁମେ ଜାଣିନ ? ଆଜ ପରା ବାପା ଆସିବେ । ମାମୁଁ ମତେ କହିଚନ୍ତି । ତାଙ୍କୁ ୱେଲ୍‌କମ୍ କରିବାକୁ ଏମାନେ ଆସିଚନ୍ତି ପରା !

ମାଟିଆ—ଆମର ଏଠାକୁ ଆସିବାର ନଥିଲା ଆଜ୍ଞା ! ପ୍ରଥମେ ଆମର ମଟରଷ୍ଟାଣ୍ଡ୍‌କୁ ଯାଇ ପାଟଗ୍ରୁଟି ଆଣିବାର କଥା ଥିଲା ।

ଲଟୁ—ହେଲେ ଆମେ ତ ମାର୍କାମାରା ବୁଲା ବକାଳ । ସେଠିକି ଫୁଲମାଳ ନେଇ ଯାଇଥିଲେ, ଲୋକମାନେ ଆମ ସାର୍‌ଙ୍କୁ ଥଟ୍ଟା କରିଥାନ୍ତେ ।

ଚନ୍ଦ୍ରିକା—ଏମାନେ ?

ଲଟୁ—ଆମେ ପାଠ ପଢ଼ୁଚୁ । ଆମ ସାର୍ ଆମର୍ ଗ୍ରେଟ ହେଲେ କ'ଣ ହେଲା ? ସେ ଆମକୁ ବଣରେ ଦୁଇଘଣ୍ଟା କରି ପାଠ-ପଢ଼ାନ୍ତି, ବିନା ପଇସାରେ । ଆମ ଗୁରୁଦେବଙ୍କ ବାପାଙ୍କୁ ଆମେ ସ୍ୱାଗତ କରିବୁନି ?

ନବନା—ସାର୍‌ଙ୍କୁ ପିନା ଆମେ ଆଠବର୍ଷ ହେଲା ଦେଖି ଆସୁଚୁ । ତାଙ୍କ ବାପାଙ୍କୁ ତ ଦେଖିନୁ ?

ଚନ୍ଦ୍ରିକା—ସୁବ୍ରତ ବାପକୁ ତୁମେମାନେ ଦେଖିବ ? ଯୋଉ ସୌଭାଗ୍ୟ ଦଶବର୍ଷ ଧରି ମୋର ହେଇନି···ଆଜି···ତୁମେ···

( ରୁଦ୍ଧ ଆବେଗ; ପ୍ରସ୍ଥାନ )

ସୁବ୍ରତ—ବୋଉ, ବୋଉ ! ଯାଃ, ସବୁ ଗୋଳମାଳ ହେଇଗଲା । ଆଚ୍ଛା ହଉ, ପିଲାମାନେ ! ତୁମେସବୁ ବାହାରକୁ ଚାଲ । ବାପା ଆସିଲେ ସେଇଠି ବାହାରେ ତାଙ୍କୁ ସ୍ୱାଗତ କରିବା । ସାବଧାନ, ଡା'ଏ ମୁଡ଼୍; ଆଗେ ବଢ଼ୋ । (ସମସ୍ତେ ପ୍ରସ୍ଥାନ)

ଶେଠଜୀ—(ପ୍ରବେଶି) ଦୁର୍ଯ୍ୟୋଧନ ବାବୁ ! ଦୁର୍ଯ୍ୟୋଧନ ବାବୁ କ'ଣ ଘରେ ନାହିଁ ? ( ଚନ୍ଦ୍ରକାକୁ ଦେଖି ଚମକି) ଚନ୍ଦ୍ରକା, ତୁ ଏଠ୍‌ଠେ କେ କର ରହେ ହୋ ?

ଚନ୍ଦ୍ରକା—ଶେଠଜୀ, ଆପଣ ଏଠି ?

ଶେଠଜୀ—ହା···ହା···ଦୁର୍ଯ୍ୟୋଧନ ବାବୁସେ ଜରା ବ୍ରେକ୍ ମାଙ୍ଗି ଆସିଥିଲି । ମଗର୍ ତୁ ଏଠ୍‌ଠେ କୋଣ କରୁଚ ?

ଚନ୍ଦ୍ରକା—ଏଇ ମୋର ଘର; ଦୁର୍ଯ୍ୟୋଧନବାବୁ ମୋର ଭାଇ ।

ଶେଠଜୀ—ଯ୍ୟା-ତୋ'ର ପୁଣି ଭାଇ···ହେଃ···ହେଃ···ଆରେ ତୋ'ର ଭାଇ ପୁଣି ଆସିଲି କଠ୍‌ଠେ ସେ ? (ଚନ୍ଦ୍ରକା ନୀରବ) ଆଚ୍ଛା ଆଚ୍ଛା, ତୋ'ର କଥା ସଚ୍ଚ । ତୁଇ କୋଣ ଦଣସାଲ୍ ଇଠ୍‌ଠେ ଲୁଚିକରି ଥିଲି ? କାହିଁ ମତେ ଖବର ଦେଇଥିଲେ ତ , ମୁଇ ତୋର ସବୁ ଇନ୍ତଜାଣ୍ କରି ନେଇ-ଥାନ୍ତା । ହେ···ହେ···ଚନ୍ଦ୍ରକା, କସମ୍ ଅଚ୍ଛି, ଦଶ୍‌ଶାଲ୍ ପାର ହେଇ ଯାଇଚ; ମଗର ତତେ ମୁଇଁ ଭୁଲ ପାରନି ।

ଚନ୍ଦ୍ରକା—ଭାଇ ଘରେ ନାହାନ୍ତି; ଆପଣ ଚାଲିଯାଆନ୍ତୁ ।

ଶେଠଜୀ—ଆରେ, କ୍ୟୁ ନଖରା କରୁଚ ? ଶେଠ୍ ଗଣପତି ରାମ୍ ସେ କୋଣ ଏ ଦୁର୍ଯ୍ୟୋଧନ ତତେ ବେଶି ଆରାମରେ ରଖିବ ?

ଚନ୍ଦ୍ରକା—ଶେଠଜୀ ! ଆପଣ କାହାକୁ କ'ଣ କହୁଚନ୍ତି ଜାଣନ୍ତି ?

ଶେଠଜୀ—ଆରେ ଇସ୍‌ମେ ଅନ୍‌ଜାନ କୋଣ ଅଚ୍ଛି ? ଭାଇ ଡାକଟା ହଉଚି ପ୍ୟାର୍‌କା ପରଦା; ଭିତରେ ଭିତରେ ପ୍ୟାର, ଆଉ ବାହାରକୁ ଭାଇ । ହେଃ···ହେଃ···ହେଃ···

ଚନ୍ଦ୍ରକା—ଓଃ, ଆପଣ ଚାଲିଯାନ୍ତୁ, ଚାଲିଯାନ୍ତୁ ଶେଠଜୀ !

ଶେଠଜୀ—ହାଁ···ହାଁ···ମୁଇଁ ଚ୍ଲିଯିବ । ମଗର ଥରେ ଭାବ ଦେଖିବୁ ଚନ୍ଦ୍ରିକା ! ଆଜ୍‌ଭି ମୁଇଁ ତତେ ମକାନ, ମୋଟର, ଚାକର, ନୌକର ଦେବ । ତତେ ରାଣୀ ବନେଇ ରଖିବ ଚନ୍ଦ୍ରିକା···

ଚନ୍ଦ୍ରିକା—ଚନ୍ଦ୍ରିକା ଦଶବର୍ଷ ହେଲ ମରି ଯାଇଚି ସେଠଜୀ ! ମିଶ୍ର ଘରର ବୋହୂ ପକ୍ଷରେ ଏ ସବୁ ଶୁଣିବା ଯେ ମହାପାପ । ଆପଣ ଚାଲିଯାନ୍ତୁ ଏଠୁ !

ଶେଠଜୀ—ସ୍ୟା, ମିଶ୍ର ଘରର ବୋହୂ ? ହେ···ହେ···ଦଶବର୍ଷ ତଲେ ଯିଏ ଧକ୍‌କା ଦେଇ ତତେ ଘରୁ ନିକାଳି ଦେଇଥିଲ, ତୁଇ ତାଙ୍କର ଘରର ବୋହୂ ?

ଯୋଗେଶ—(ପ୍ରବେଶି) ହଁ ହଁ, ମଧୁ ମିଶ୍ର ଘରର ବୋହୂ । ଆପଣ ଚାଲିଯାନ୍ତୁ···

ଶେଠଜୀ—କୋନ୍ ? ଆରେ ଯୋଗିଆ ?

ଯୋଗେଶ—ହେଃ···ଯୋଗେଶ ବାବୁ ବୋଲି କୁହନ୍ତୁ । ଶ୍ରୀଯୁକ୍ତ ଯୋଗେଶ ଚନ୍ଦ୍ର ମହାପାତ୍ର, ଇଣ୍ଡିଆ ଏଜେଣ୍ଟସ୍‌ର ମାଲିକ; ଆପଣ ଚାଲିଯାନ୍ତୁ ଏ ଘରୁ ।

ଶେଠଜୀ—ଏଁ, ତୁ କ୍ୟା ବୋଲି ହେ ? ଇଣ୍ଡିଆ ଏଜେଣ୍ଟସ୍‌ର···

ଯୋଗେଶ—ହାଁଜୀ ହାଁଜୀ; ଆପଣଙ୍କଠୁ ଯୋଉ ବ୍ୟବସାୟୀ ଚାଲ୍-ଗୁଡ଼ାକ ଶିଖିଥିଲି, ତା'ରି ବଳରେ ମୁଁ ଆଜି ଚଉଦଟା କମ୍ପାନିର ଓଡ଼ିଶା ରିପ୍ରେଜେଣ୍ଟେଟିଭ୍ । ହାଁ କି ନେହିଁ ?

ଶେଠଜୀ—ହାଁଜୀ···ହାଁଜୀ···

ଯୋଗେଶ—ବିଲ୍‌କୁଲ୍ ଠିକ୍ । ଶେଠ୍ ଗଣପତ ରାମ୍ ! ତୁମର ଯଦି କୌଣସି କାମ ଥାଏ ତେବେ ତୁମେ ମଧ ମତେ ତୁମର ରିପ୍ରେଜେଣ୍ଟେଟିଭ୍ କରି ନେଇ ପାର । ଡେଲ୍‌ଟା ପ୍ରୋଜେକ୍ଟ, ନ୍ୟାସନାଲ ହାଇ ୱେ, ଏକ୍‌ସପ୍ରେସ୍ ହାଇ ୱେ, ମିଗ୍

ଫ୍ୟାକ୍‌ଟ୍ରି, ଦଣ୍ଡକାରଣ୍ୟ ଯୋଜନା, ଲୋକ ସମ୍ପର୍କ ବିଭାଗ, P. W. D. ବିଭାଗ, କୃଷି ବିଭାଗ, ସ୍ୱାସ୍ଥ୍ୟ ବିଭାଗ ବିଦ୍ୟୁତ୍ ବିଭାଗ—ଯେ କୌଣସି ଡିପାର୍ଟମେଣ୍ଟରେ କାମ ହେଉନା କାହିଁକି, ସବୁ ଏଇ "ବ୍ୟାଗ୍ ଭିତରେ"—

ଗଣପତି—ହେଁ—ଯା ଯା; ସେ଼ ଦାଓ୍ୟା କଥା ଦେଖାଉଚ ?

ଯୋଗେଶ—କ'ଣ ବିଶ୍ୱାସ ହଉନି ? ତୁମେ ହାଓ୍ୟାରୁ ରେକର୍ଡ଼ କାଢ଼ୁଥିଲ, ମୁଁ ଏବେ ଖାଲି ହାଓ୍ୟାରୁ ପର୍ମିଟ୍ କାଢ଼ୁଚି । ଏଇ ଦେଖନ୍ତୁ ଷାଠିଏ ଟନ୍ ଲୁହା ଛଡ଼ର ପରମିଟ୍ । ହେଇ କଲିକତାର ମିତ୍ରା ଏଣ୍ଡ କୋ ନାଁରେ ପନ୍ଦରଶହ ଟ୍ରାକ୍ଟର୍ ସପ୍ଲାଇ ପାଇଁ ଅର୍ଡ଼ର; ଆଉ ଦେଖିବ ?

ଶେଠଜୀ—ହେଃ...ହେଃ...ଆରେ ଯୋଗେଶବାବୁ ! ଆପଣ ହାମାର୍ ଏଜେଣ୍ଟ୍ ବନିବ ? ହାମାର୍ ଲାଗି ବେ୍ୟପାର ବନ୍ଦବସ୍ତ କରିଦବ ?

ଯୋଗେଶ—ହଁ...ନିଶ୍ଚୟ—ଉପଯୁକ୍ତ କମିଶନ୍ ପାଇଲେ ତୁମଗିନ୍ନି ନିଶ୍ଚୟ କାମ କରିବ । ମୋର ନିଜ କ୍ୟାପିଟାଲ୍ ଅଫିସକୁ ଥରେ ଆସିଲେ ସେ ସବୁ କଥାବାର୍ତ୍ତା ପକ୍କା କରିଦବା... ଏବେ ଆପଣ ଆସନ୍ତୁ ।

ଶେଠଜୀ—ହାଁଜୀ—ହାଁଜୀ, ମଗର୍ ଦୁର୍ଯ୍ୟୋଧନ ବାବୁ ଆସିଲେ ଜରା ହାମାର୍ ଗଦିକୁ ଆସିବାକୁ କହିବ । ତାଙ୍କର ଚେକ୍ ହାମର୍ ଜରୁରତ୍ ଅଛି ।

ଯୋଗେଶ—ଠିକ୍ ଅଛି । ସେ ଯଥା ସମୟରେ ଖବର ପାଇବେ । ଆପଣ ଆସନ୍ତୁ ।

ଶେଠଜୀ—ହାଁଜୀ...ହାଁଜୀ...(ଯାଉଥିଲେ)

ଯୋଗେଶ—ଶେଠଜୀ ! ହଁ ଶୁଣ, ଆଜ ଯେବେ ଏ ଘରେ ପାଦଦେଇ ତୁମେ ମୋ ନୂଆବୋଉକୁ ଅପମାନ କରିବାର ଚେଷ୍ଟା କରିଚ, ତେବେ ତୁମର ଭିତର କଥାସବୁ ଭିଜିଲେନ୍ସ ଡିପାର୍ଟମେଣ୍ଟକୁ ଜଣାଇଦେବି ।

ଶେଠଜୀ—ହାଁଜୀ···ହାଁଜୀ···ଜୟ ରାମ୍‌ଜିକି (ପ୍ରସ୍ଥାନ)

ଯୋଗେଶ—ତା' କଥା ମନରେ ଧରିବେନି ନୂଆବୋଉ !

ଚନ୍ଦ୍ରିକା—ନୂଆବୋଉ ?

ଯୋଗେଶ—ସେ ସମ୍ପର୍କ କଥା ପରେ କହିବି । ତୁମର ପୁଅ କାହିଁ ? ତା' ନାଁ କ'ଣ ରଖିଚ ?

ଚନ୍ଦ୍ରିକା—ତା' ନାଁ ସୁବ୍ରତ—ବାହାରକୁ ଯାଇଚି ।

ଯୋଗେଶ—ଆଚ୍ଛା ତେବେ ମୁଁ ଯାଉଚି ନୂଆବୋଉ ! ମୋର ଏଇ କାର୍ଡ଼ଟା ରଖ । ଦୁର୍ଯ୍ୟୋଧନ ବାବୁଙ୍କୁ ଦେଇ କହିବ, ମୋ ସାଙ୍ଗରେ ଦେଖା କରିବେ । ତାଙ୍କର ନୂଆ ଡଜନ୍ ଟ୍ରକ୍ ଲାଗି ପର୍ମିଟ୍ ମିଳିଯାଇଛି ।

ଚନ୍ଦ୍ରିକା—ଆପଣ ଦୁର୍‌ ଭାଇଙ୍କୁ ଜାଣନ୍ତି ?

ଯୋଗେଶ—ଅନେକ ଦିନରୁ; ତାଙ୍କର ପାଖରୁ ତୁମ କଥା ଶୁଣି ସବୁ ବୁଝିଚି ।

ଚନ୍ଦ୍ରିକା—ସେ ମୋ କଥା ଆପଣଙ୍କୁ କହିଚନ୍ତି ?

ଯୋଗେଶ—ସମ୍ପୂର୍ଣ୍ଣ ଘଟଣା ବା ନାଆଁ କହି ନଥିଲେ । ତେବେ ସେ ଯେଉଁ ସୂଚନା ଦେଇଥିଲେ, ସେଇଥିରୁ ମୁଁ ଠିକ୍ ଅନୁମାନ କରି ନେଇଥିଲି । ଯାହାହଉ, ଏଠି ତୁମର କିଛି ଅସୁବିଧା ନଥିବ ବୋଧହୁଏ ?

ଚନ୍ଦ୍ରିକା—ଦୁର୍‌ଭାଇ ପରି ଭାଇ ଯାହାର ଅଛି, ତା'ର ପୁଣି ଅସୁବିଧା କ'ଣ ?

ଯୋଗେଶ—ଆଚ୍ଛା, ନମସ୍କାର ନୂଆବୋଉ ! ପରେ ଦେଖା ହବ (ପ୍ରସ୍ଥାନ) (ଚନ୍ଦ୍ରକା ଆଖିରୁ ଲୁହ ପୋଛୁଲା)

ଦୁଗ—(ନେପଥ୍ୟ) ସୁବା ! ସୁବ୍ରତ ! ତୋ'ର ବାପା ଆସିଚନ୍ତିରେ ! ବାପା···

ଚନ୍ଦ୍ରକା—ବାପା ! ସୁବ୍ରତର ବାପା ? (ପ୍ରବେଶ କଲା ବେଲୁନ୍) ବେଲୁନ୍ ଭାଇ, ତୁମେ ।

ବେଲୁନ୍—ହଁ, ମୁଁ କ'ଣ କରିବ କହିଲୁ ? ଏ ଦୁଗଭାଇର ହାଉଡ଼ାମି ଆଜଯାଏ ଗଲାନ । ମତେ ଧରି ଆଣିଚ ସୁବ୍ରତର ବାପା ହବାକୁ ।

ଦୁଗ—(ପ୍ରବେଶ) କ'ଣ ଆଉ କରାଯିବ ? ସୁବା ନାହିଁ କ ? (ଚନ୍ଦ୍ରକା ନାହିଁ କଲା) ଯା'ହଉ ରକ୍ଷା ହେଇଚ । ମୁଁ ଠିକଏ ରିହର୍‌ସାଲ୍ ଦେଇଦିଏ ।

ଚନ୍ଦ୍ରକା—ଦୁଗଭାଇ ! ଏ ସବୁ କ'ଣ କରୁଚ ତୁମେ ?

ଦୁଗ—ଆଲେ, ତୁ ପରା ଦେଖୁଚୁ, ଆଜକ ଛ'ମାସ ହେଲା ସୁବା କମିତ ତା' ବାପକୁ ଦେଖିବ ବୋଲି ଜିଦ୍ ଧରିଚ । ତାକୁ ତା' ବାପ ସାଙ୍ଗରେ ଥରେ ଭେଟ କରେଇ ନ ଦେଲେ, ସେ କ'ଣ ଶାନ୍ତ ହବ ? କେତେଦିନ ଆଉ ତାକୁ ମିଛ କହି ବୋଧ କରୁଥିବା ?

ବେଲୁନ୍—ସେଥିଲାଗି ଗୋଟାଏ ଆବାଳ-ବ୍ରହ୍ମଚାରୀକ ବାପ କରି-ଦେଇଚୁ ?

ଦୁଗ—ମଧୁ, ତୁ ଯା'; ଆମ ଲାଗି କପେ କପେ ଚା' ତିଆରି କର । ମୁଁ ତା ଭିତରେ ବେଲୁନ୍‌କୁ ପାର୍ଟଟା ପଢ଼େଇ ଦଉଚ ।

ଚନ୍ଦ୍ରକା—ହଉ, ତୁମେ ବସ; ମୁଁ ଚା' ଆଣି ଦଉଚ (ପ୍ରସ୍ଥାନ)

ବେଲୁନ୍—ହେ ଦୁଗାଇ ! ମତେ କ'ଣ କରିବାକୁ ହବ କହିଲୁ ?

ଦୁର୍ଗ—ହିଁ ଶୁଣ, ସୁବ୍ରତକୁ ଦଶବର୍ଷ ଚାଲୁଛି । ସେ ଷ୍ଟୁଆର୍ଟ ସ୍କୁଲରେ ପଢ଼ୁଛି । ହେଲେ ବାପକୁ ଦେଖିବାର ସୁଯୋଗ ସେ ଆଜି ପର୍ଯ୍ୟନ୍ତ ପାଇ ନାହିଁ । ମାତ୍ର ଏଇ କେତେ ଦିନ ହେଲା ତା'ର ଝୁଙ୍କ୍ ଉଠିଛି ବାପାକୁ ଦେଖିବ । ତୁ ହେଲୁ ତା'ର ବାପ । ବାପ ତା'ର ପୁଅକୁ ଯେମିତି ସ୍ନେହ କରେ ସେମିତି କଥାବାର୍ତ୍ତା ଅ'ପଦ କର...

ବେଲୁନ୍—ମୂଳରୁ ବାଈ ନା, ପୁଅ ନାଁ ଦେଇ ଶୁଖୁଆ ଲଞ୍ଜ । କରେ ପୁଅ ସାଙ୍ଗେ କେମିତି କଥାବାର୍ତ୍ତା କରିବାକୁ ହୁଏ, ମୁଁ କ'ଣ ଜାଣେ ? ଆମ ଦୁହିଁଙ୍କର କ ଯୋଗରେ ଦେଖା ହୋଇଥିଲା କେଜାଣି, ଦିହିଁକ ଦିହେଁ ପର ଓଥଲ୍ଷଣ୍ହେଇ ରହିଗଲେ !

ସୁବ୍ରତ—(ନେପଥ୍ୟେ) ବୋଉ ! ବୋଉ......

ଦୁର୍ଗ—ହେଇ ଆସିଗଲା ବେ, ତୋ ପୁଅ ଆସିଗଲା ।

ବେଲୁନ୍—(ଦୁଆରକୁ ଚାହିଁ) ଇ'ବେ ! ଏତେ ଦଙ୍ଗଲ କ'ଣ ? ଏମାନେ ସମସ୍ତେ କ'ଣ ମୋ ପୁଅ ? ଏ ଗୁଡ଼ାଙ୍କ ନାଁ କ'ଣ ? ଏତେ ନାଁ'ତ ମନେରଖି ପାରିବିନି ।

ଦୁର୍ଗ—ସମସ୍ତେ ନୁହଁନ୍ତି ବେ ! ଯେ ତତେ ବାପା ଡାକିବ, ସେଇ ତୋର ପୁଅ । ତା-ନାଁ ସୁବ୍ରତ, ଷ୍ଟୁଆର୍ଟ ସ୍କୁଲରେ ପଢ଼ୁଛି; ଆଉ ତୁ' ଦିଲ୍ଲୀରେ ବ୍ୟବସାୟ କରୁଚୁ । ସମୟ ପାଇନୁ, ସେଇଥିପାଇଁ ଆସି ପାରିନୁ ।

ବେଲୁନ୍—ସବୁ ପୁଅମାନେ ଦିଲ୍ଲୀରେ ପଢ଼ୁଚନ୍ତି; ମୁଁ ଷ୍ଟୁଆର୍ଟ ସ୍କୁଲରେ ବ୍ୟବସାୟ କରୁଚି ।

ଦୁର୍ଗ—ଧେତ୍, ସବୁ ଓଲଟ୍ ପାଲଟ୍ କରିଦେଲୁ ! ତୁ ଦିଲ୍ଲୀରେ ବ୍ୟବସାୟ କରୁଚୁ, ସୁବ୍ରତ ତୋର ଏକମାତ୍ର ପୁଅ; ସେ

ଷ୍ଟୁଆର୍ଟ ସ୍କୁଲରେ ପାଠ ପଢ଼ୁଚ । ଆଚ୍ଛା ହଉ, ମୁଁ ଏଠେ ଅଛି; ସବୁ ବତେଇ ଦେବ ।

ସୁବ୍ରତ—(ସାଥିଙ୍କ ସହ ପ୍ରବେଶ) ଆରେ ମାମୁଁ, ତୁମେ ଏଠି ? ବାପାଙ୍କୁ ଆଣିବାକୁ ମଟରେ ଷ୍ଟାଣ୍ଡକୁ ଯାଇଥିଲ ପରା ?

ଦୁଖ—କଅରେ ତୋ ବାପା ତ ଆସିଗଲେଣି । ନେଇ—ଏଠି ଦେଖିଲୁ କଏ ଛିଡ଼ା ହୋଇଚନ୍ତି ?

ସୁବ୍ରତ—ବାପା—? ମୋ ବାପା ! (ମୁଣ୍ଡିଆ ମାରିଲ )

(ସମସ୍ତେ ନମସ୍କାର କଲେ)

ବେଲୁନ୍—ସମସ୍ତେ ବୁଢ଼ା ହୋଇଥାଅ ! ହୋଃ-ହୋଃ-ହୁଁ, ତା'ପରେ ଧୁବା ! ଏମାନେ ସବୁ ତୋ'ର ଫ୍ରେଣ୍ଡ; ରାସ୍ତାର ବୁଲାବକାଳପିଲା ମାନେ ତୋର ଫ୍ରେଣ୍ଡ ହେଲେ କମିତ ?

ସୁବ୍ରତ—ବାପା, ତୁମେ ତ ଏମାନଙ୍କୁ କେବେ ଦେଖିନ, ତୁମେ କମିତ ଜାଣିଲ ?

ବେଲୁନ୍—ହୋଃ ! ମୁଁ ପୁଣି ଦେଖିନ ଏମାନଙ୍କୁ ?

ଦୁଖ—ନାହିଁ, ସେ ଦେଖି ନାହାନ୍ତି; ମୁଁ ତାଙ୍କୁ କହିଚ ନା ? ( ପିଲମାନେ ଗ୍ଭଲ ଯାଉଥିଲେ ) ଆରେ ତୁମେମାନେ ଚାଲି ଯାଉଚ କୁଆଡ଼େ ? ଏଠାକୁ ଆସ, ନିଅ ! (ଦୁଖ ସମସ୍ତଙ୍କ ହାତରେ ଗୋଟାଏ ୨ ଟଙ୍କା ଦେଲ) ଯାଅ, ଆଉ ଡମରକୁ ଟ । ଯାଉ ତୁମର ଆଜି କ୍ଲାସକୁଯାଇ ପାରିବେ ନାହିଁ । (ପିଲାମାନେ ଗ୍ଭଲଗଲେ)

ସୁବ୍ରତ—ବାପା, ତୁମେ ଏତେ ଦିନଯାଏ କୋଉଠି ଥିଲ ? ଆମକୁ ଦେଖିବାକୁ ତମ ମନ ଡାକୁ ନଥିଲା ?

ବେଲୁନ୍—ଏଁ ? ମାନେ-ଏ ମୁଁ ଷ୍ଟୁଆର୍ଟ ସ୍କୁଲରେ ପଢ଼ିଥିଲି କ ନା ?

ସୁବା—କ'ଣ କହିଲ ?

ଦୁର୍ବ—ଆରେ ସୁବା, ତୋ ବାପା ଖଦ୍ ଦିଲ୍ଲୀରେ ଜଣେ ବଡ଼ ବିଜନେସ-ମ୍ୟାନ୍; ସେ କ'ଣ ସହଜରେ ଆସି ପାରୁଛନ୍ତି ? ବ୍ୟବସାୟ ଛାଡ଼ି ଚାଲି ଆସିଲେ, କିଏ କ'ଣ ନେଇ କରି ନେଇଯିବ, ତାର ଠିକଣା ଅଛି ? ତା'ଛଡ଼ା ସେଇ ବ୍ୟବସାୟ ନେଇ ତାଙ୍କୁ ଆମେରିକା, ଜାପାନ୍, ଫ୍ରାନ୍ସରେ ଯାଇ ମାସ ମାସ ଧରି ରହିବାକୁ ହୁଏ ।

ସୁବ୍ରତ—ରିଏଲି ? ହାଓ ନାଇସ୍—ଆମେରିକା, ଫ୍ରାନ୍ସ, ଜାପାନ୍ ।

ବେଲୁନ୍—ହିଁ-ହିଁ, ହୋଃ-ହୋଃ-ଏରୋପ୍ଲେନ୍‌ରେ ଯାଏ । ଟୋଷ୍ଟ, ଆମେଲେଟ୍, ଟେଷ୍, କଟଲେଟ୍; ହାଃ-ହାଃ—

ସୁବା—ବାପା, ଏଥର ମୁଁ ତୁମ ସାଙ୍ଗରେ ଯିବି । ମତେ ନେଇ ବୁଲେଇ ଆଣିବ ନା ?

ବେଲୁନ୍—ଏଁ-ମରିଗଲି ରେ—(ଠାରିଲା ଦୁର୍ବାକୁ)

ସୁବା - କ'ଣ କହିଲ ?

ଦୁର୍ବା—ଆଚ୍ଛା ଆଚ୍ଛା, ତା'ର ବ୍ୟବସ୍ଥା କରିବା । ସେ ଆଗ ଯା'ନ୍ତୁ, ପାସ୍‌ପୋର୍ଟ ପ୍ରଭୃତି ନାନାପ୍ରକାର ଜଞ୍ଜାଳ ଅଛି; ବିଦେଶ ଯିବାକୁ ସବୁ ବ୍ୟବସ୍ଥା ହେଲେ ଯାଇ ତୁ ଯିବୁ ନା ?

ସୁବ୍ରତ—ନୋ ନୋ ନୋ—ହେଇଛି ବାପା ! ବୋଉ ଆଉ ମାମୁଙ୍କୁ ବି ସାଙ୍ଗରେ ନେଇ ଯିବା । ସେ-ଦୁହେଁ ନଗଲେ ମୁଁ ଯିବି କିମିତି ?

ବେଲୁନ୍—ହିଁ ହିଁ, ସମସ୍ତଙ୍କୁ ସାଙ୍ଗରେ ନେଇ ଯିବା । ବୋଉ, ମାମୁଁ ଟ୍ରଙ୍କ, ବେଡ଼ିଂ; ହାଣ୍ଡି, ଡେକ୍‌ଚି, ଶିଳ, ଘୁମ୍ପୁଡ଼ି...

ସୁବ୍ରତ—ହୋଃ, ବାପା ! ତୁମେ ଇମିତି କ'ଣ କହୁଚ ମ ? ମୁଁ କ'ଣ ଅଉ ଜାଣିନ । ଆମ ସ୍କୁଲରେ ଯୋଉ Father ଅଛନ୍ତି

ତାଙ୍କଠୁ ଆମେ ବିଦେଶର କେତେ କଥା ଶୁଣିଚୁ । ବିଦେଶ ଗଲାବେଳେ ହାଣ୍ଡି, ଡେକ୍‌ଚି, ଶୀଳ, ଘୁଞ୍ଚୁଣୀ କ'ଣ ନେଇ-ହୁଏ ?

ବେଲୁନ୍—ଏଁ ହେଃ ହେଃ, ମୁଁ ସିମିତ ଥଟ୍ଟାରେ କହିଦେଲି ନା ?

ସୁବ୍ରତ—ବାପା ! ଏଥର ତୁମେ ଗଲାବେଳେ ମତେ ଆଉ ବୋଉକୁ ସାଙ୍ଗରେ ନେଇ ଯାଅ । ତୁମଲାଗି ବୋଉ ସବୁବେଳେ କାନ୍ଦୁଚି । ମତେ ଜମା ଭଲଲାଗୁନି । ଆମକୁ ନେଇ ଯିବ ?

ବେଲୁନ୍—ତୋ ବୋଉକୁ ମୁଁ ନେଇ ଯିବି ?

ବେଲୁନ୍—ତୋ ବୋଉକୁ ମୁଁ ନେଇ ଯିବି !

ସୁବ୍ରତ—ହଁ, ନହେଲେ ସେ ବହୁତ କାନ୍ଦିବ । ରହିଥାଅ, ମୁଁ ବୋଉକୁ ଡାକିଆଣେ । ବୋଉ ! ବୋଉ ! (ପ୍ରସ୍ଥାନ)

( ବେଲୁନ୍ ବିପଥାନ୍ତ ବିଗକୁ ଧାଇଁ ଯାଉଥିଲା )

ଦୁଖି—କରେ, କରେ ! ଉଣେଣ୍ଣାସୀ ହୋଇ ତୁ ଧାଇଁଚୁ କୁଆଡ଼େ ?

ବେଲୁନ୍—ଦୁଖିଇ, ମତେ ଛାଡ଼ ଦେ; ବାପ ହବା ଏକ୍ସ୍‌ଟ୍ରା କାମ, ମୋ ଦେହରୁ ଦମ୍ ଖାଲି ବୋହିଗଲାଣି ।

ଦୁଖି—ହଉ, ବ୍ୟସ୍ତହୋଇ ପଡ଼ୁଚୁ କାହିଁକି ? ଆ, ବସ ।

ବେଲୁନ୍—ନାଇଁ ଭାଇ, ତୋ ଗୋଡ଼ତଳେ ପଡ଼ୁଚି; ମତେ ଆଉ ଆକ୍ଟିଂ କରିବାକୁ କହନା । ହଇରେ ସେ ଟୋକା ତ'କେତେ କ'ଣ ଜାଣିଚି; ସିଏ ମତେ ପାଠ ପଢ଼େଇବ । ମୁଁ ତା'ର ବାପ ହେବି କ'ଣ ?

ଦୁଖି—ଆରେ ଶୁଭେନ୍ଦୁ ମିଶ୍ରଙ୍କ ପୁଅ—ତୋ-ମୋ ଭଳି ମୂର୍ଖର ପୁଅ ସେ ନୁହେଁ; ପ୍ରଫେସରଙ୍କ ପୁଅ ସେ । ବିଦ୍ୟାବୁଦ୍ଧିରେ ତାକୁ କିଏ ହରେଇବ ?

ବେଲୁନ୍—ଓ୍ବ ଡେଞ୍ଜରସ୍ ଲୋକରେ ! ହଇରେ ମୋର ବିଦ୍ୟାବୁଦ୍ଧି କଥା ତ ତତେ ଅଜଣା ନାହିଁ; ତୁ ଜାଣିଶୁଣି ମତେ···

ଦୁର୍ଗ—କ'ଣ କରିବ କହ ? ସେ ପିଲାଟାକୁ ତା' ବାପର ପ୍ରକୃତ ପରିଚୟ କହିଦେଲେ ସେ କ'ଣ ଆଉ ବାଧା ମାନିବ ? ସିଧା ଯାଇ ଶୁଭବାବୁଙ୍କ ଘରେ ହାଜର ହେଇଯିବ । ଏଇ ଛ'ମାସ ହେଲା ସେ ତାଙ୍କ ଝିଅ ଆଭା ସାଙ୍ଗରେ ତାଙ୍କ ଘରକୁ ଯିବାଆସିବା କରୁଛି ଯେ···ସେଥିଲାଗି ମୋ ମନରେ ସବୁବେଳେ ଆତଙ୍କ । କେତେବେଳେ ଯଦି କଥା ଧରାପଡ଼ଯାଏ ? ଦଶବର୍ଷ ତଳେ ଯୋଉଦିନ ଚନ୍ଦ୍ରିକା ଆସି ମୋ ଦୁଆରେ ପହଞ୍ଚି ଆଶ୍ରୟ ମାଗିଲା, ସେଇ ଦିନଠୁ ମୁଁ ଜାଣେ, ଦିନେ ନା ଦିନେ ଝଡ଼ ଉଠିବ । ବୁନିଆଦି ଘରର ରକ୍ତ ମୋ ଘରେ ରୂପ ପାଇଲା । ଗଳିର ନାଚନେବାଲି ଶକୁନ୍ତଳାଙ୍କ ପରି ରଜାପୁଅକୁ ଆପଣା ପଣତ କାନି ତଳେ ବଡ଼ କରିବାରେ ମନଦେଲା । ଆଉ ମୁଁ···ଆଉ ମୁଁ···

ବେଲୁନ୍—ଦୁର୍ଗାଇ !

ଦୁର୍ଗ—ହଉ ତୁ ଯା'; ତୋ ହୋଟେଲକୁ ତୁ ପଳା ।

ବେଲୁନ୍—ସେ ଟୋକାଟାକୁ ତୁ ସମ୍ଭାଳିବୁ ଟି ?

ଦୁର୍ଗ—ହଁ-ହଁ, ମୁଁ ଫାଙ୍କିମାରି ତାକୁ ବୋଧ କରିଦେବି ? ତୁ ଯା···

ବେଲୁନ୍—ଓ-ହୋ ! ତୁ ମତେ ବଞ୍ଚେଇ ଦେଲୁ ଦୁର୍ଗାଇ ! ଏଡ଼େ ବଉଟେ ପିଲା ହେଲେ କ'ଣ ହବ, ତା' ଆଗକୁ ଯିବାକୁ ଖାଲି ଡର ମାରୁଛି । ଯାଉଛି ଭାଇ !

ଦୁର୍ଗ—ହଁ—ଯା···

ବେଲୁନ୍—ଦୁର୍ଗାଇ···ଦୁର୍ଗାଇ···

ଦୁର୍ଗ—କ'ଣ ରେ ?

ବେଲୁନ୍—ଯେତେବେଳେ ମନ ହବ, ମୋ ହୋଟେଲକୁ ଆସିବୁ ।
ଯାହା ତୋର ଇଚ୍ଛା ହବ ଖାଇଯିବୁ । ପଇସା ପଡ଼ିବନି ।
ତୋ' ଭଳି ଲୋକଟା ସୁନାମୁଣ୍ଡା ପାଲଟିଗଲା—

ଦୁର୍ବା—ଆବେ ଯାଉଚୁ ନା, ଗୁଣ ବଖାଣି ବସିଲୁ ।

ବେଲୁନ୍—ଯାଉଚି ବେ ! ଆହା ତୋର ଯୋଉ ସୁଗୁଣ ଗୁଡ଼ାକ ନାଁ,
ତାକୁ ପୁଣି ମୁଁ ବଖାଣିବି ? ଆସିବୁ ବେ, ଖାଇଯିବୁ । ହେଃ-
ମୋଫତ୍ ଖାଇବ, ସେଥିରେ ପୁଣି ଏତେ ଖୋସାମତି (ପ୍ରସ୍ଥାନ)
(ପ୍ରବେଶ କଲେ ସୁବ୍ରତ ଓ ଚନ୍ଦ୍ରିକା; ହାତରେ ଚା' କପ୍)

ସୁବ୍ରତ—ଆସୁନ୍ତୁ ବୋଉ, ଆ' ମଁ । ବାପା ଆସିଚନ୍ତି ପରା ! ଆରେ
ମାମୁଁ, ବାପା କାହାନ୍ତି ?

ଦୁର୍ବା—ହଁ, ଗୋଟାଏ ଟେଲିଗ୍ରାମ୍ ଆସି ପହଞ୍ଚିଲା ଯେ, ସେ ତରବର
ହୋଇ ଗାଡ଼ି ଧରିବାକୁ ଚାଲିଗଲେ । ଗଲାବେଳେ ବଡ଼ ଦୁଃଖ
କଲେ । କହିଲେ ଏତେଦିନ ପରେ ଆସିଲି ଯେ, ଭଲରେ
ଭଲରେ ଦି'ପଦ କଥାବାର୍ତ୍ତା ହୋଇ ପାରିଲାନି । ହେଉ ନେ,
ଏସବୁ ତୋ ଲାଗି ଆଣିଥିଲେ । ଦେଇ ଯାଇଚନ୍ତି, ଆଉ କହି
ଯାଇଚନ୍ତି ତୁ ମନଦେଇ ପାଠ ପଢ଼ିଲେ ସିଏ ତତେ ବିଲାତ
ପଠେଇ ଦେବେ ।

ସୁବ୍ରତ—ସତ ?

ଦୁର୍ବା—ହଁ ନେ ଯା···ସେଥିରେ କ'ଣ ସବୁ ଅଛି ଦେଖିବୁ ଯା···

ସୁବ୍ରତ—ମୁଁ ଯାଉଛି ମୋ ସାଙ୍ଗମାନଙ୍କୁ ଦେଖେଇ ଆଣେ । (ପ୍ରସ୍ଥାନ)

ମଧୁ—ଛିଃ ! ଏ କ'ଣ ସୁବ୍ରତର ପରିଚୟ ? ଜଣେ ଅଶିକ୍ଷିତ
ହୋଟେଲବାଲା ତା'ର ବାପ !

ଦୁର୍ବା—ବେଲୁନ୍ ଅପାଠୁଆ ହୋଟେଲବାଲା ହୋଇପାରେ; ହେଲେ
ଶୁଭବାବୁଙ୍କ ଅପେକ୍ଷା ତା'ର ମଣିଷପଣିଆ ଅନେକ ବେଶି ।

ଯିଏ ନିଜର ରକ୍ତକୁ ଭୁଲିଯାଇ ପାରେ, ସିଏ ଗଦା ଗଦା ବହି ପଢ଼ି ଗଣ୍ଡା ଗଣ୍ଡା ଉପାଧି ପାଇଲେ ମଧ୍ୟ ସୁବାଭଳି ଝିଅର ବାପା ହବାକୁ ଅଯୋଗ୍ୟ । ଶୁଭବାବୁ କ'ଣ ଜାଣନ୍ତିନି, ମଧୁବୋଲି ଗୋଠାଏ ନିରମାଖି ଝିଅ, ତାଙ୍କର ରକ୍ତକୁ ନିଜ ଦେହରେ ବୋହି ରାସ୍ତାକଡ଼କୁ ଚାଲି ଯାଇଚି ବୋଲି ? ନିଜ ଇଚ୍ଛାରେ ନୁହେଁ, ଜୋର୍‌କରି ତାକୁ ତଡ଼ି ଦିଆଯାଇଛି ବୋଲି ?

ମଧୁ—ଭାଇ···?

ଦୁର୍ଗ—ମୋର କ'ଣ ଇଚ୍ଛା ହୁଏ ଜାଣୁ ? ଯିଏ ତତେ ଆଉ ତୋର ପୁଅକୁ ଦଶବର୍ଷ ଧରି ଏତେ ଯନ୍ତ୍ରଣା ଦେଇ ଆସିଚି, ତାକୁ ଆଉ ତା'ର ପରିବାରକୁ ଯଦି ମୋର ଏଇ ବୁଟ୍‌ତଳେ ପେଷିଦେଇ ପାରନ୍ତି···

ମଧୁ—ଭାଇ !

ଦୁର୍ଗ—ତୁ ବୁଝି ପାରିବୁନି ମଧୁ ! ତୋର ଏ ଅବସ୍ଥା ଦେଖିଲେ ମୋର ଛାତି ଭିତରଟା କମିତି ଜଳି ହୋଇଯାଏ ତୁ ବୁଝି ପାରିବୁନି । ତୁ କ'ଣ ଭାବୁଚୁ ମୁଁ ଆଉଜଣକୁ ମନ ଖୁସିରେ ଡାକି ଆଣିଥିଲି ସୁବାର ବାପ ହେବାକୁ ? ଅନ୍ୟ ଉପାୟ ନ ଦେଖି, ଖାଲି ବର୍ତ୍ତମାନର ଅବସ୍ଥାକୁ ସମ୍ଭାଳିବା ପାଇଁ ସିନା···

ମଧୁ—ହେଲେ କେତେଦିନ ସେ ପିଲଟାକୁ ଆଉ ଛଳେଇ ରଖିବ ?

ଦୁର୍ଗ—ମଧୁ ! ଛଳନାର ତୁଳିତଳେ ଆମର ଦୁଇଟି ଜୀବନ ଯେତେବେଳେ ହଜିଯାଇଚି, ଅନ୍ଧ ଭଳି ଅନ୍ଧକାରରେ ଅଣ୍ଡାଳିବା ଛଡ଼ା ଆମର ଅନ୍ୟ ଉପାୟ ନାହିଁ ।

ମଧୁ—ଭାଇ···!

ଦୁର୍ଗ—ଭାଇ ! ମୁଁ କି ଭାଇ ? ମୋ ଭଉଣୀର ସ୍ୱାମୀ ଥାଇ ସ୍ୱାମୀ ନାହିଁ ; ଭଣଜୀର ବାପା ଥାଇ ଆଉ ଜଣେ ବାପ ବୋଲି

ଅଭିନୟ କରୁଚ; କ ଭାଇ ମୁଁ ? ମୋ ଭଉଣୀର ଆଖିର ଲୁହ ପୋଛି ପାରିନ ଦଶବର୍ଷ ହେଲା...

ମଧୁ—ଭାଇ ! ମୋ ଆଖିର ଲୁହ କ'ଣ ଏ ଜୀବନରେ ଶେଷ ହବ ? ଖାଲି ବି ଶଙ୍କୁ ଭଳି ଶୂନ୍ୟକୁ ଭରସା କରିଚ । ଚନ୍ଦ୍ର ରାଇଜରେ ପହଞ୍ଚି ପାରିଲ, ନା ଧୂଳି ରାଇଜକୁ ଫେରି ପାରିଲ ? ସେୟୁ ମୁଁ କ'ଣ ହେଲି ଭାଇ ! ପତିତା ତ ହେଲିନ, ପତି-ସୁହାଗିନୀ ବ ହେଇ ପାରିଲିନ । ସେୟୁ ମୁଁ କ'ଣ ହେଲି ଭାଇ ?

ଦୁରା—ଓଃ, ମଧୁ ! ଚାଲିଯା ତୁ ମୋ ଆଗରୁ...

ମଧୁ—ଭାଇ ! ମୋ ଦୁଃଖରେ ତୁମକୁ ଦଶବର୍ଷ ଜାଳି ସାରିଲିଣି । ଏଣିକି ମୋ ବାଟରେ ମୁଁ ଚାଲିଯିବି ଭାଇ !

ଦୁରା—ଚାଲିଯିବୁ ? ଏ ଘର ଛାଡ଼ି ଚାଲିଯିବୁ ? ହାଣିଦେବି; ଠିକ ଠିକ କରି ସମସ୍ତଙ୍କୁ ହାଣିଦେବି—ତତେ, ତୋ'ର ପୁଅକୁ; ତୋର ସ୍ୱାମୀ ଶୁଭକୁ, ଆଉ—ଆଉ ଶେଷରେ ମୁଁ ନିଜେ...

ମଧୁ—ଭାଇ...??

ଦୁରା—ଯଦି ସମସ୍ତଙ୍କର ମଙ୍ଗଳ ଚାହୁଁ, ଏ ଘର ଏରୁଣ୍ଡି ଡେଇଁ ବାହାରକୁ ଯିବୁନି ମଧୁ ! ତତେ-ତତେ ମୋ ରାଣ । ଯଦି ମୋର କିଛି ମୂଲ୍ୟ ଥାଏ ତୋ ପାଖରେ...

ମଧୁ—ଭାଇ...

( କାନ୍ଦି କାନ୍ଦି କାନ୍ଧ ଭିତରକୁ ପ୍ରସ୍ଥାନ )

—ଅ ନ୍ଧା ର—

---

# ଦ୍ୱିତୀୟ ଦୃଶ୍ୟ

[ ପ୍ରଫେସର ଡାଃ ଶୁରେନ୍ଦ୍ର ମିଶ୍ରଙ୍କର ଡ୍ରଇଂ ରୁମ୍ । ଆଜି ତାଙ୍କ ଝିଅର ଅଷ୍ଟମ ଜନ୍ମ-ଉତ୍ସବ । ତେଣୁ କାଗଜ ଫୁଲ ଓ ବେଲୁନ୍‌ରେ ଘରଟି ଆଧୁନିକ ଧରଣରେ ସଜ୍ଜିତ । ସୋଫା, କାଉଚ, ଟେଲିଫୋନ୍ ପ୍ରଭୃତି ଆସବାବ ପତ୍ର । ଘର ମଝିରେ ପଛ କାନ୍ଥକୁ ଲଗି ଗୋଟାଏ ବନ୍ଧୁଟେସା । ପିଲମାନେ ନାଚ ଡ୍ରାମା କରୁଚନ୍ତି । ନାଚ ଶେଷରେ ପିଲାମାନେ ଗ୍ଲଲଗଲେ । ଅଭ୍ୟାଗତଙ୍କୁ ନମସ୍କାର ଜଣାଇ ଡାକ୍ତର, ଆଭା ଓ ସୀତା ପ୍ରବେଶ କରିବେ । ]

···ନାଚ···

ସୀତା—ବାବା ! ସମସ୍ତେ ବିଦାୟ ହୋଇ ଗଲେଣି ?

ଡାକ୍ତର—ହଁ ମା', ଅନ୍ତଥିଅଭ୍ୟାଗତମାନେ ଭଲରେ ଭଲରେ ଗ୍ଲଲଗଲେଣି ।

ସୀତା—ଦେଖିଲେ ନା ବାବା, ତାଙ୍କ ଢଙ୍ଗ ଦେଖିଲେ ତ ? ଝିଅର ଜନ୍ମଦିନ, ଏତେ ଅନ୍ତଥିଅଭ୍ୟାଗତ ଘରକୁ ଆସି ଖାଇପିଇ ଗଲେ, ବାବୁଙ୍କର ଏ ପର୍ଯ୍ୟନ୍ତ ଦେଖାନାହିଁ ।

ଡାକ୍ତର—ତାକୁ ଏସବୁ ଭଡ଼ଭଡ଼ ଗୋଳମାଳ ଭଲ ଲାଗେନା ବୋଲି ବୋଧହୁଏ ଜାଣିଶୁଣି ଡେରି କରିଦେଇଚି ।

ସୀତା—ତା'ବୋଲି ଏତେ ଭଦ୍ରଲୋକଙ୍କ ଆଗରେ ମୋ ମୁଣ୍ଡ ତଳକୁ କରି ଦେଲେ ତ ! ଝିଅର ଜନ୍ମଦିନ ଉତ୍ସବରେ ବାପ ଯଦି ନିଜେ ଉପସ୍ଥିତ ନ ରୁହନ୍ତି, ଲୋକେ କ'ଣ ବୋଲି ଭାବିବେ କହିଲ ?···

ଡାକ୍ତର—ହଁ, ହେଲ ମା'...କାମ ତ ସୁରୁଖୁରୁରେ ସରିଗଲା...

ସୀତା—କାମ ତ ଗୃହର ବାକର ବ ଚଳେଇଦେଇ ପାରିଥାନ୍ତେ । ପ୍ରଶ୍ନ ନ କାମ ଚଳିପିବା ଉପରେ ନୁହେଁ; ଘରର କାମ—ନିଜେ ଘରର ମାଲିକ ଯଦି ନ ରହନ୍ତି, ଲୋକେ ଅପମାନିତ ବୋଧ କରିବେନି ? ନା-ବାବା, ସିଏ ଜାଣିଶୁଣି ମତେ ପାଞ୍ଚଜଣଙ୍କ ଆଗରେ ହ୍ରେଁଟ କରି ଦେଇଚନ୍ତି । ସବୁବେଳେ ମୋ ଉପରେ ସେ ଡାଉ ସାଧୁଚନ୍ତି ।

ଡାକ୍ତର—ଛି ମା' ଏ ସବୁ କ'ଣ କହୁଚୁ ? ଶୁଭ ଭଳି ଧୀରସ୍ଥିର ପିଲ; ସେ କାହାର ଅପକାର କାମନା କରିପାରେ ? ତୋର ବୁଝିବାରେ ଭୁଲ ହେଉଚ ବୋଧହୁଏ—

ସୀତା—ହଁ, ଆପଣ ତ ସେଇକଥା କହିବେ । ମାତ୍ର ଆଠ ଦଶବର୍ଷ ହେଲ ତାଙ୍କୁ ବାହା ହେଇ ମୁଁ ସଂସାର କଲିଣି; ମୁଁ ତାଙ୍କୁ ବୁଝି ପାରିଲିନି, ନା ? ସବୁ ବୁଝିଲିଣି ବାବା ! ଆଉ ବୁଝିଲିଣି ବୋଲି ବେଶି ଦୁଃଖ ଲଗୁଚ ।

ଡାକ୍ତର—ଆରେ, ଆରେ, ଏଥିରେ ଏତେ ଦୁଃଖ କରିବାର କ'ଣ ଅଛି ମା' ? ବାପର ସ୍ନେହାଶୀଷ ତ ପ୍ରତି ମୁହୂର୍ତ୍ତରେ ସନ୍ତାନ-ସନ୍ତତିଙ୍କ ଉପରେ ଝରି ପଡ଼ୁଥାଏ; ସେଥିରେ ସନ୍ଦେହ ବା ଅଭିମାନ କରିବାର କ'ଣ ଅଛି ? ହୁଏତ ବଡ଼ଘ କିଛି କାମ ଲାଗି ଅଟକି ଯାଇଥିବ ।

ସୀତା—ଘଧା ଆଠଟାଯାଏ ତାଙ୍କର କି କାମ ଅଛି ଶୁଣେ ? ତାଙ୍କର କଲେଜରେ ଆଜି ଲଷ୍ଟ୍ ପିରିଅଡ୍ ଥିଲ । ଗୃରିଟାବେଳେ କ୍ଲାସ ଶେଷ କରିଥିଲେ, ଅନ୍ତତଃ ଗୃରିଟା ପନ୍ଦର ବା ସାଢ଼େ ଗୃରିଟା

ବେଳେ ଘରେ ପହଞ୍ଚ ପାରୁଥାନ୍ତେ; ମାତ୍ର ଆସି ଆଠଟା ବାଜିଲାଣି, ବାବୁଙ୍କର ଦେଖା ନାହିଁ ।

ଡାକ୍ତର—ହଉ, ହଉ, ଘରକଥା ବୁଝ । ପିଲାଙ୍କ ଭଳି ଅଭିମାନ କରି ବସିଲେ···( ସୀତା ପ୍ରସ୍ଥାନ ) ହଁ, ମୋ କୁନି ମାଇପ କୁଆଡ଼େ ଗଲୁ ଲେ ?

ଆଭା—ଆରେ ଅଜା ! ପୁଣି ମତେ ଚଡ଼େଇଲ ?

ଡାକ୍ତର—ହାଃ-ହାଃ ! ଆଲୋ ଆଭା, ତୁଇ ତ ମୋ ଜୀବନର ଆଲୋକଧାରା; ତତେ ନ ଦେଖିଲେ ମୁଁ ପୁଣି ଅନ୍ଧ ବୁଢ଼ା ହୋଇଯିବି ପରା । ତୁ ଆସିଲା ପରଠୁ ମୁଁ ଧୀରେ ଧୀରେ ଟୋକା ହୋଇ ଯାଉଚି—ଦେଖି ପାରୁନୁ ?

ଆଭା—ଆହା ଲୋ ମୋ' ଟୋକା··· ?

ଡାକ୍ତର—ଆସିଲୁ ଦେଖିବା, କ'ଣ ସବୁ ଉପହାର ତୁ ପାଇଚୁ ? (ବାହାରେ ମଟର ଶବ୍ଦ) ଏ ଅବେଳରେ କିଏ ଆସିଲା ପୁଣି ? (ମଣି ପ୍ରବେଶ) କିଲୋ ମଣି, ତୁ ଏତେ ଡେରିରେ ଆସିଲୁ ଯେ ?

ମଣି (ମୁଣ୍ଡି ଆ ମାରି) କ'ଣ କରିବି ? ସ୍ବାମୀଙ୍କ ଲାଗି ମଣିଷ କ'ଣ କୋଉ କାମ ସମୟ ମୁତାବକ କରି ପାରୁଚି ?

ଆଭା—ମଣି ଅପି ! ନମସ୍କାର !

ମଣି—ବୁଢ଼ୀଟିଏ ହୋଇଥା ! ହଇ ବୋହୁ, କୁଆଡ଼େ ଗଲ ମ ?

(ପ୍ରବେଶ କଲା ଯୋଗିଆ—ହାତରେ ବ୍ୟାଗ୍ ବାଞ୍ଛଣା, ପାଣି-ଗାମୁଛା ଓ ଉପହାର । )

ଯୋଗେଶ—ହାଁଜୀ-ହାଁଜୀ—ସେଥୁ କ'ଣ କହୁଚ ? ଆରେ ନମସ୍କାର ମଉସା ! କିଲୋ ଆଭା, ଭଲଅଛୁ ତ ?

ମଣି—କାହିଁ, ଭେଣ୍ଡେଇଟା କାହିଁ ଗଲା ? ଏତେବେଳ ଯାଏ ବାହାରେ କ'ଣ କରୁଥିଲ ?...

ଯୋଗେଶ—(ଡବା ଦେଇ) ସେ ଡ୍ରାଇଭରକୁ କହି ଦଉଥିଲି ଗାଡ଼ିଟା ଗଛତଳେ ରଖିଦବାକୁ । ନିଅ···

ମଣି—ହଁ, ସବୁ କାମରେ ଡେରି ! (ଆଭାକୁ ଦେଇ)ଆଭା,ନେ'ଲେ ମା' ! ତୋ ଲାଗି ପୁଅଟେ ଆଣିଛ ।

ଆଭା—ଓଃ ଅଣ୍ଟି ! ଥ୍ୟାଙ୍କ୍ ୟୁ । ମୋର ମନଲାଗି ଜିନିଷଟେ ଆଣି ଦେଇଛ ।

ଡାକ୍ତର—ହାଁ, ଏଥର ପୁଅଝିଅଙ୍କ ବାହାଘର ବ୍ୟବସ୍ଥା କରିଦେଲେ ଏ ବୁଢ଼ାଅଜା ଯାଙ୍କୁ ଲୁ ବ ବୁଢ଼ୀ ଆଈଟେ ହେଇଯିବୁ । ବସ ବସ । ମୁଁ ଘରଟାକୁ ଖବର ଦିଏ ।

ଆଭା—ଚାଲ ଅଜା, ମୁଁ ବ ଯିବ; ବୋଉକୁ କୁଣ୍ଢେଇଟା ଦେଖେଇ ଆସିବ ।

ଡାକ୍ତର—ଆ···ଆ···(ଦୁହେଁ ପ୍ରସ୍ଥାନ)

ଯୋଗେଶ—ବସ, ବସ; ମଟରରେ ବସି ବସି ହାଲିଆ ହେଇ ଯିବଣି; ଟିକିଏ ରେଷ୍ଟ୍ ନିଅ ।

ମଣି—(ବସି) ଭାରି ଗରମ ଲାଗୁଛ କାହିଁକି ?

ଯୋଗେଶ—ସେ ରାପର୍‌ଟା କାଢ଼ି ଦଉନ ? (ବସି) ପାଣି ପିଇବ ?

ମଣି—ପଚାରୁଛ କ'ଣ ମ ? ମୋ ତଣ୍ଟି ଶୁଖିଗଲାଣି, ଜଣା ପଡ଼ୁନି ତମକୁ ? ନିଅ, ରଖ । (ମଣି ପାଣି ପିଇଲା)

ଯୋଗେଶ—ଆଉ ନିଅ ।

ମଣି—ନାଇଁ ଥାଉ । ପାନ ଖଣ୍ଡେ ଦେଲ ! ଓଃ,ଷୋଳଶ ମାଇଲ ବାଟ ମଟରରେ ବସି ଆସିବା ଗୋଟେ ଜଞ୍ଜାଳ । ଆରେ ପାନ ଖଣ୍ଡେ ଦଉନ କାହିଁକି ମ ?

ଯୋଗେଶ—ହେଇ ନିଅ । (ଡବାରୁ ଖୋଲି)

ମଣି—ସେ଼ ଶୁଖିଲ୍ ପାନ କ'ଣ ଦଉଚ ମ ? (ଖାଇଲ୍)

ଯୋଗେଶ—କ'ଣ କରିବ ? ଡବା ଭିତରେ ଓଦା କନା ଦେଇଥିଲି; ହେଲେ ଶୁଖି ଗଲଣି । ଗୋଟାଏ ଏୟାର କଣ୍ଡିସନ୍ ପାନଡବା ଆବିଷ୍କାର କରି ପାରିଲେ ସଂସାରରେ ଖୁବ୍ ବିକି ହୁଅନ୍ତା, ନୁହେଁ ?

ମଣି—ଓଃ, କହିଲ ପରି ଗରମ ହଉଚି ବୋଲି । Fan ଟା କାହିଁ ?

ଯୋଗେଶ—ବସ, ବସ; ମୁଁ ପଙ୍ଖା କରି ଦଉଚି । (ପାଖରେ ବସି ପଙ୍ଖା କଲା) ଭଲଲାଗିଲା ?

ମଣି - ତମଭଳି ମନ ଜାଣି କାମ କରିବା ଲୋକ ଆଉ ଦି'ଟି ଦେଖିନାହିଁ ।

ଯୋଗେଶ—ଆମ ଭିତରେ ପରା ଜନ୍ମଜନ୍ମାନ୍ତରର ସମ୍ବନ୍ଧ । ତୁମ କଥା ମୁଁ ନ ବୁଝିଲେ ଆଉ କିଏ ବୁଝିବ ? ଦଶ ବର୍ଷ ତଳେ କି ଶୁଭ ଲଗ୍ନରେ ତୁମକୁ ଦେଖିଥିଲି କେଜାଣି, ସେଇ ଦିନଠୁଁ ମୋ ଜୀବନର ଗତି ବଦଳି ଗଲା ପରା ! ହେଃ-ହେଃ, ତୁମେ ପରା ମୋର ପ୍ରେରଣା, ମୋର ଶକ୍ତି ।

ମଣି—ହେଲେ ମୁଁ ତୁମକୁ ସବୁବେଳେ କହୁଚି ଏଣିକି ଏ ଦଲାଲି ଛାଡ଼ି କିଛି ଗୋଟାଏ ସ୍ଥାୟୀ ବ୍ୟବସାୟ ଧର ବୋଲି ।

ଯୋଗେଶ—ମୁଁ ବି ତୁମକୁ ସବୁବେଳେ କହୁଚି, ପର୍ମାନେଣ୍ଟ୍ କାମ କରିବାର ସମୟ ହୋଇନି ବୋଲି । ପ୍ରଥମେ ଦୁଇ ତିନି ଲକ୍ଷ ବ୍ୟାଙ୍କରେ ରଖିସାରେ, ତା'ପରେ ଗୋଟିଏ କାରଖାନା ଆରମ୍ଭ କରି ବସିଯିବି । ବେଶ୍ ତୁମେ ଖୁସି, ମୁଁ ବି ଏ ହାଁ-ଜୀ ବ୍ୟବସାୟକୁ ଗୁଡ୍ ବାଏ······

ମଣି—ପଙ୍ଖା କର ମ, ଗରମ ହଉଛ ପରା । ଖାଲି କଥା କହିବା ଛଡ଼ା ଆଉ କିଛି ଆସୁନି ତୁମକୁ ।

(ପ୍ରବେଶ କଲା ସୁବ୍ରତ; ତାକୁ ଦଶ ବର୍ଷ । ହାଫ୍‌ପ୍ୟାଣ୍ଟ ଓ କମିଜ ପିନ୍ଧିଛି । ହାତରେ ବୁଦ୍ଧଦେବଙ୍କ ମୂର୍ତ୍ତି)

ମଣି—(ତାକୁ ଦେଖି) କ'ଣ ବାବା ! କାହାକୁ ଖୋଜୁଚ ?

ସୁବା—ନମସ୍କାର ! ଆଭାର ଜନ୍ମଦିନ ଲାଗି ଉପହାର ଆଣିଥିଲି । ତାକୁ ଟିକଏ ଡାକିଦେଇ ପାରିବେ ?

ମଣି—ତୁମେ କ'ଣ ଆଭାର ସାଙ୍ଗ ?

ସୁବା—ହଁ ଆଜ୍ଞା, ମୁଁ ମଧ୍ୟ ଷ୍ଟୁଆର୍ଟ ସ୍କୁଲରେ ପଢ଼ୁଚି ।

ମଣି—ତୁମ ନାଁ କ'ଣ ?

ସୁବା—ସୁବ୍ରତ, ମତେ ସୁବା ବୋଲି ଡାକନ୍ତି ।

ଯୋଗେଶ—ସୁବ୍ରତ ? ଓ ତୁମେ କ'ଣ ଦୁର୍ଯ୍ୟୋଧନ ବାବୁଙ୍କ ଭଣଜା ?

ଆଭା—(ପ୍ରବେଶ) ପିଇସା ଆଉ ଆଣ୍ଟି ଭିତରକୁ ଯାଆନ୍ତୁ'ମ ? ବୋଉ କେତେବେଳୁ ଖାଇବାର ବ୍ୟବସ୍ଥା କଲାଣି ପରା ! ଆରେ ସୁବା, ତୁ କେତେବେଳେ ଆସିଲୁ ?

ସୁବା—ଏଇ ବର୍ତ୍ତମାନ; ପାଠପଢ଼ାରୁ ଛୁଟି ପାଇଲି ନା କେବାକେ ଟିକିଏ ଡେରି ହୋଇଗଲା । ନେ; ଏଇଟି ତୋ ଲାଗି ଆଣିଚି ।

ଆଭା—ଭଗବାନ୍ ବୁଦ୍ଧଦେବଙ୍କ ମୂର୍ତ୍ତି ? ଓ, ବିଉଟିଫୁଲ୍ !

ମଣି—ଚାଲ ଆମେ ଭିତରକୁ ଯିବା; ତୋ ସାଙ୍ଗକୁ ଡାକୁନୁ ?

ଆଭା—ହଁ ହଁ; ଚାଲ ସୁବା, ଖାଇବୁ ଚାଲ ।

ସୁବା—ନା ଆଭା, ମୁଁ ଖାଇକରି ଆସିଚି । ଉପହାରଟା ଦେଇ ନ ଆସିଲେ ଅଭଦ୍ରତା ହେବ ବୋଲି ମା ଜୋର କରି ମତେ

ପଠେଇ ଦେଲେ ଟଗ୍ର ! ମୁଁ ଯାଉଚ, କାଲି ପୁଣି ଦେଖାହେବ ।

[ସବିତା ହାତରେ ପାଣି ଢାଳେ ଧରି ସିଞ୍ଚି ସିଞ୍ଚି ପ୍ରବେଶ କଲେ]

ସବିତା—ଆଉ ଦେଖା ହେବ ? ଦେବ ଚାଲିଗଲା, ମଧୁ ଚାଲିଗଲା; ମୁଁ ତ ତଡ଼ ଦେଇଚ, ଆଉ ଦେଖା ହେବ କୋଉଠି ? ଉଃ; ସବୁ ଜୁଆଁ କରି ଦେଉଚନ୍ତି । (ପାଣି ସିଞ୍ଚିଲେ)

ମନ୍ତ୍ରୀ—ବୋଉ !

ସବିତା—କିଏ, ମଧୁ ? ମୋ ବୋହୂ ? ଏଁ, ନା ନା; ଓ, ତୁ ? କଲୋ ମଣି ! ତୁ କୁଆଡ଼େ ? ଆଲୋ ବୋଉ ଲୋ ! କୋଇଁ ଆସିଚନ୍ତି ? (ଜିଭ କାଢ଼ି ଓଢ଼ଣା ଟାଣିଲେ)

ଯୋଗେଶ—ହାଁଜୀ-ହାଁଜୀ ! ନମସ୍କାର ଆଜ୍ଞା !

ସବିତା—ବୁଢ଼ାଟିଏ ହୋଇଥାଅ; ବଞ୍ଚିଥିଲେ ତ ନିଶ୍ଚୟ ବୁଢ଼ା ହେବ, ଆଉ କ'ଣ ଟୋକା ହୋଇ ରହିଥିବ ସବୁଦିନ ?

ଯୋଗେଶ—ହାଁଜୀ-ହାଁଜୀ ! (ମନ୍ତ୍ରୀଙ୍କୁ) ଚାଲ ପଳେଇବା ।

ସବିତା—ଏ ହେ ହେ, ଯୋତା ପିନ୍ଧି ଘର ଭିତରକୁ ପଶି ଆସିଚ ? ମଇଳା ଅସନା କ'ଣ ମାଡ଼ିଥିବ; ଛି ଛିଃ ସବୁ ସାଫ କରିଦେବ ପରା । (ପାଣି ସିଞ୍ଚିବାରେ ଲାଗିଲେ)

ଯୋଗେଶ—(ଯୋତା ଖୋଲି ହାତରେ ଧରି) ଥାଉ ଥାଉ ଆଜ୍ଞା ! ଆଉ ପାଣିର କିଛି ଦରକାର ନାହିଁ । ଯୋତା ହାଲକ ଏଥର ଶୂନ୍ୟେ ଶୂନ୍ୟେ ଚାଲିଯିବ । (ମନ୍ତ୍ରୀ ଓ ଯୋଗେଶ ପ୍ରସ୍ଥାନ)

ସବିତା—ହଁ; ଶୂନ୍ୟରେ କୁଆଡ଼େ ମିଳେଇ ଗଲେ ଦେଏ, ଧନ ବର୍ଣ୍ଣ ଭିତରେ ଆଜି ତା ସନ୍ଧାନ ପାଇଲିନି । ଦେବ ତ ହଜି ଗଲା ଗଲା, ମୋ ବୋହୂ...ମୋ ବଂଶର ରକ୍ତକୁ ମାଆରେ ନେଇ ଗଲା । ସେ ପିଲାଟା ଯେତେ ନିହିତିକି ନେଇ ଯାଇଛି

ପିଲା ତ ! ପୁଅ ହେଲା କି ଝିଅ ହେଲା ତା ବି ଜାଣି ପାରିଲିନି ।
(ଆଖି ପୋଛିଲେ) ଆରେ ସେ କିଏ ?

ଆଖି—ମୋ ସାଙ୍ଗ, ଆମେ ଏକା ସ୍କୁଲରେ ପଢ଼ୁଚୁ ତରି ! ସୁବ୍ରତ ନା ସୁବା ।

ମନ୍ଦିରା—ଶୁଭ, ମୋ ଶୁଭ !

ଆଖି—ତୋ ଶୁଭ ନୁହନ୍ତି ଲୋ, ସୁବା···ସୁବ୍ରତ । ସୁବା ! ସେ ହଉଚନ୍ତି ମୋ ଗ୍ରାନି, ଜେଜେମା ।

ସୁବା—(ମୁଣ୍ଡିଆ ମାରିଲା; ଦୁହେଁ ଦୁହିଁଙ୍କ ଚାହିଁ ରହିଲେ)

ମନ୍ଦିରା—ତୁ ମୋ ପାଖରେ ରହିବୁ ? ମୋ ନାତି ହବୁ ?

ସୁବା—ହେବି କ'ଣ ଜେଜେମା, ମୁଁ କ'ଣ ତୁମ ନାତି ନୁହେଁ ?

ମନ୍ଦିରା—ତୁ ମୋ ନାତି···ତୁ ମୋ ନାତି ! ଶୁଭ ମୋର ତୋ ବୟସରେ ଠିକ୍ ତୋରି ଭଳିଆ ହେଇଥିଲା, ତୋରି ଭଳି ମୁଣ୍ଡିଆ ମାରୁଥିଲା; ଆଜି ଆଉ ମତେ କେହି ମୁଣ୍ଡିଆ ମାରୁଚନ୍ତି ?

ସୁବା—ବୟସର ସମ୍ମାନ ନ ଦେଲେ ନିଜେ ସମ୍ମାନ ଆସିବ କେଉଁଠୁ ଜେଜେମା ?

ମନ୍ଦିରା—ଜେଜେମା ? ଦଶ ବର୍ଷ ପରେ ଆଜି ମନେ ପଡ଼ିଲା ? ତୋ ବାପକୁ ତଡ଼ି ଦେଇଥିଲି ବୋଲି ତୁ ଏ ବୁଢ଼ୀଟା ଉପରେ ଦାଉ ସାଧିଲୁ ?

ଆଖି—ଏସବୁ କ'ଣ କହୁଚ ଗ୍ରାନି ? ସେ ପରା ଦୁର୍ଯୋଧନବାବୁଙ୍କ ଭଣଜା ।

ମନ୍ଦିରା—ଏ-ହେ-ହେ, ଯୋତା ପିନ୍ଧି ଘରକୁ ପଶି ଆସିଚ । ଜେମା ! ସବୁ ମାରି କାଟିଦେଲା ! ସବୁ ଅଶୁଦ୍ଧ କରିଦେଲା । ଓଁ ବିଷ୍ଣୁ, ମାଧବ, ବିଷ୍ଣୁ ମାଧବ··· (ପାଣି ସିଞ୍ଚି ପ୍ରସ୍ଥାନ)

ସୁବା—ଜେଜେମା'ଙ୍କ ମୁଣ୍ଡ ଖରାପ ହୋଇଯାଇଚ ନା ?
ଆଗ୍ର—ହଁ ।
ସୁବା—ସେ ମତେ ଖୁବ ଭଲ ଲାଗିଲେ । ହଉ ମୁଁ ଯାଉଚ; କାଲି ସ୍କୁଲରେ ଦେଖା ହବ ।
ଆଗ୍ର—ହଁ, ତୁ ଯା; ମୁଁ ବି ଯାଏ । ବୋଉ ତେଣେ ଟେବୁଲ୍ ପାଖରେ ମତେ ଖୋଜୁଥିବ । ଟା'ଟା (ଆଗ୍ର ପ୍ରସ୍ଥାନ । ସୁବ୍ରତ ଗଲାବେଳେ ପ୍ରବେଶ କଲେ ଶୁଭ; ହାତରେ ଦୁଇଖଣ୍ଡ ବହି; ସୁବ୍ରତ ମୁଣ୍ଡିଆ ମାରିଲା)
ଶୁଭ—ଆରେ ସୁବ୍ରତ, ତୁମେ କେତେ ବେଳୁ ଆସିଲଣି ? ହଁ ହେଲା ବାବା, ହେଲା ।
ସୁବ୍ରତ—ଆଗ୍ରର ଜନ୍ମଦିନ, ଉପହାର ଦବାକୁ ଆସିଥିଲି ।
ଶୁଭ—ଦେଖା ହେଲାଣି ?
ସୁବା—ହଁ ସାର୍, ସେ ଖାଇବାକୁ ଗଲା ।
ଶୁଭ—ଖାଇବାକୁ ? (ଘଡ଼ି ଦେଖିଲା) **Oh heavens!** ଆସି ନ'ଟା ବାଜିବ । ହଁ ସୁବ୍ରତ, ତମେ ଖାଇଲଣି ?
ସୁବା—ମୁଁ ଘରୁ ଖାଇ ଆସିଥିଲି ସାର୍ !
ଶୁଭ—ଆଉ, ପଢ଼ାପଢ଼ି କରୁଚ ତ ? କ୍ଲାସ୍‌ରେ ପ୍ରଥମ ହେବା ଦରକାର; ନ ହେଲେ ମୁଁ ଆଉ ତୁମ ସାଙ୍ଗରେ ମୋଟେ କଥାବାର୍ତ୍ତା କରିବିନି ।
ସୁବା—ମୁଁ କ୍ଲାସ୍‌ରେ ପ୍ରଥମ ହେବି ସାର୍ ! ସେ ବିଶ୍ୱାସ ମୋର ଅଛି ।
ଶୁଭ—**Is it? Good, very good!** ଏଇ ସେଲ୍‌ଫକନ୍‌ଫିଡେନ୍‌ସ, ଆତ୍ମ ବିଶ୍ୱାସ ମନରେ ଥିଲେ ତୁମେ ନିଶ୍ଚୟ ପ୍ରତ୍ୟେକ କାମରେ ସଫଳ ହେବ ।

ସୁବ୍ରତ—ସାର୍ ! ମଣିଷ କ'ଣ ନିଜର ଶକ୍ତି ଓ ସାହସ ବଳରେ ସବୁ କରିପାରେ ? ଭାଗ୍ୟ ବା ଭଗବାନଙ୍କର କ'ଣ କିଛି କରିବାର ନାହିଁ ?

ଶୁଭ—କ'ଣ କହିଲ ? ଏ ବୟସରୁ ଏ ଭାବନା ନେଇ ମଣିଷ ବନାମ୍ ଭଗବାନ୍—ଶକ୍ତି ଭର୍ସେସ୍ ଭାଗ୍ୟ—**very interesting, very interesting** ! ଏ ବିଷୟରେ ଆଉ କେତେବେଳ ପଡ଼ିରହିବ, ବସି ଆଲୋଚନା କରିବା । ବର୍ତ୍ତମାନ ରାତି ହେଲାଣି; ଯାଅ, ଶୋଇ ପଡ଼ିବ ଯାଅ ।

ସୁବା—ହଉ ତେବେ ମୁଁ ଆସୁଛି ସାର୍ ! ନମସ୍କାର ।

ଶୁଭ—ନମସ୍କାର ! (ସୁବା ଚାଲିଯାଉଥିଲା) ସୁବା ! ତୁମ ମାମୁଁ ଭଲଅଛନ୍ତି ?

ସୁବା—ହଁ ସାର୍ ! ଗୋଟେ ନୂଆ ଡିଜେଲ୍ ଟ୍ରକ୍ ଆଣିଛନ୍ତି ସେ ତାକୁଇ ନେଇ ସେ ବ୍ୟସ୍ତ । ଖାଲି ଖାଇବା ଶୋଇବା ସମୟ ଛଡ଼ା, ଆଉ କେତେବେଳେ ସେ କ'ଣ ଘରେ ରହନ୍ତି ? ସେଥିରେ ପୁଣି ଅନେକ ସମୟରେ ନିଜେ ଟ୍ରକ୍ ନେଇ ବାହାରିଯାନ୍ତି ସେ, ଦିନେ ଦୁଇ ଦିନରେ ଫେରନ୍ତି । ସିଏ ତ ମଣିଷ ନୁହନ୍ତି···ମେସିନ୍ ।

ଶୁଭ—ମାତ୍ର **He is selfmade**-ନିଜର ଶକ୍ତି, ସାହସ ଆଉ ବୁଦ୍ଧିବଳରେ ସେ ବହୁ ଅସୁବିଧାକୁ ତୁଚ୍ଛ କରି ବଡ଼ ହୋଇଛନ୍ତି । ଦିନେ ଯାଇ ନିଶ୍ଚୟ ଦେଖାକରି ଆସିବି । ସଂସାରରେ ବଡ଼ ହେବାକୁ କେଉଁ ସବୁ ଗୁଣର ପ୍ରୟୋଜନ, ତାହା ସେ ଶିଖେଇ ଦେଇ ପାରିବେ । ଆଉ ତୁମର ମା'ଙ୍କୁ ମଧ୍ୟ ଦେଖା କରିବାର ଇଚ୍ଛା ମୋର ଅଛି । ସେ ଜଣେ ଆଦର୍ଶ ମା । ତାଙ୍କର ଆଦର୍ଶ ତୁମ ଭିତରେ ପ୍ରକାଶ ପାଉଛି । **She must be very**

intelligent ! ହୁଁ, ଯିବ ସମସ୍ତ ସୁବିଧା ଦେଖି; ଦିନେ ନିଶ୍ଚୟ ଯିବ । ଆଚ୍ଛା ତୁମେ ଆସ, Good-night !

ସୁବ୍ରତ—Good-night ! (ସୁବ୍ରତ ଚାଲିଗଲା; ପକେଟରୁ ପର୍ସ କାଢ଼ି ଶୁଭ ସେଥିରୁ ଗ୍ରେଟ ମୋଜାଟିଏ କାଢ଼ି ଦେଖିଲେ । ବିରାଡ଼ି ଶବ୍ଦ ଶୁଣି ଶୁଭ ବ୍ୟସ୍ତ ହେଲେ)

ଶୁଭ—ଆରେ, କିଏ ଅଛ ? ସେ ବିରାଡ଼ିଟାକୁ ଘୁଞ୍ଚେଇ ଦିଅ; ନ ହେଲେ ମାରି ଦିଅ, ତାକୁ ଗୁଳି କରି ଦିଅ । ରଘୁଆ ! ସୀତା !

ସୀତା—(ପ୍ରବେଶି) ହଁ ହଁ, ବ୍ୟସ୍ତହବା ଦରକାର ନାହିଁ; ରଘୁଆ ତାକୁ ଘଉଡ଼ି ଦେଲାଣି । ଆଜିର ଜନ୍ମ ଦିନ ବୋଲି ଭଦ୍ରଲୋକଙ୍କୁ ନିମନ୍ତ୍ରଣ କରିଦେଇ ତୁମେ ଏ ପର୍ଯ୍ୟନ୍ତ କୋଉଠି ବସିଥିଲ ଶୁଣେ ?

ଶୁଭ—ଦେଖ ସୀତା ! ମୁଁ ଏକାବେଳକେ ଭୁଲି ଯାଇଚି । କ୍ଲାସ ପରେ ପରେ library ରେ ବସି ଖଣ୍ଡେ ବହି ଖୋଲିଚି, ବାସ୍ କେତେବେଳେ ଯେ ସମସ୍ତ ଚାଲିଯାଇଚି···

ସୀତା—ସବୁବେଳେ ଏଇ ଫାଙ୍କି ତୁମେ ମାରିଆସୁଚ ।

ଶୁଭ—ଫାଙ୍କି ? ତୁମେ କ'ଣ କହିବାକୁ ଚାହଁ—ମୁଁ ମିଛ କହୁଚି ?

ସୀତା—ତା'ଛଡ଼ା ଆଉ କ'ଣ ?

ଶୁଭ—ସୀତା !

ସୀତା—ଜଣେ ବାପ ତା' ନିଜ ଝିଅର ଜନ୍ମଦିନ ଭୁଲିଯାଇ ପାରେ ଏ କଥା କିଏ ବିଶ୍ୱାସ କରିବ ? ମାସରେ ପନ୍ଦର କୋଡ଼ିଏ ଦିନ ତୁମେ ଏମିତି ରାତି ଆଠ ନ' ବେଳକୁ ଘରକୁ

ଫେର; ଆଉ ସବୁବେଳେ ସେଇ ଗୋଟିଏ କଥା—ପଢ଼ୁ ପଢ଼ୁ ଭୁଲିଗଲି ।

ଶୁଭ — କଲୁ ସୀତା, ମୁଁ ମିଛ କହୁ ନି । It is actual fact. Economics ଆଉ Englishର M. A. pass କଲାପରେ ମୁଁ ବର୍ତ୍ତମାନ ଇତିହାସର M. A. ପରୀକ୍ଷା ଦେବାକୁ ପ୍ରସ୍ତୁତ ହଉଚି ।

ସୀତା — ଭଗବାନ୍ ଜାଣନ୍ତୁ ତୁମ ପରୀକ୍ଷା କଥା ! ଗୋଟା ଗୋଟା କରି ଛ'ଟା M.A. ପାଶ୍ କଲେ ଲାଭ କ'ଣ ହବ କହି ପାରିବ ? ଖାଲି ନିଜର ମୁଣ୍ଡକୁ ଖରାପ କରିବାଛଡ଼ା ପରିଣାମ ଆଉ କିଛି ହବ ନି । ବାହାଘରର ନ'ଅ ବର୍ଷ ଭିତରେ ଦୁଇଟା M.A., ଆଉ ଗୋଟାଏ ଡକ୍ଟରେଟ୍ ପାଇ ସାରିଲଣି । ଲେକ୍‌ଚରରୁ ପ୍ରଫେସର୍ ହେଲଣି । ଏଣିକି ଟିକିଏ ବିଶ୍ରାମ ନିଅ, ଘର ସଂସାରକୁ ଗୁହଁ । ତା' ନାହିଁ, ସ୍ତ୍ରୀ-ପରିବାରଠୁ କେମିତି ଦୂରରେ ରହିବ, ତା'ର ଚେଷ୍ଟା କରୁଚ ?

ଶୁଭ — ସୀତା, ଏସବୁ କ'ଣ କହୁଚ ତୁମେ ?

ସୀତା—କ'ଣ ମିଛ କହୁଚି ? ଯାହାକୁ ଘର ଭଲ ଲାଗୁଥାନ୍ତା, ସେ କ୍ଲାସ ପରେ ସିଧା ଘରକୁ ନ ଆସି, ଲାଇବ୍ରେରିରେ ବସି ରହନ୍ତା ରାତି ନ'ଟା ଯାଏ ? ମୋ ଉପରେ ତୁମେ କାହିଁକି ଏ ଦାଉ ସାଧୁଚ ? ମୁଁ କି ଦୋଷ କରିଚି ତୁମ ପାଖରେ ?

ଶୁଭ—ଓଃ ସୀତା, ବନ୍ଦ କର ! For Heaven's sake କ୍ଷମା କର ତୁମେ ! ଅଯଥାରେ ଗୁଡ଼ାଏ ଦୋଷ ମୋ ମୁଣ୍ଡରେ ଲଦି, ଦୁନିଆ ଆଖିରେ ହେୟ କରିଦେବାକୁ ଚେଷ୍ଟା କର ନି ।

ସୀତା—କିଏ କାହାକୁ ପ୍ରେଷ୍ଠ କରି ଦେଇଛି, ତାହା ଆଜ ଦୁନିଆ ଦେଖି ଯାଇଛି । ଏତେ ଭଦ୍ରଲୋକ ଆସି ଦେଖିଗଲେ ଝିଅର ଜନ୍ମ ଦିନରେ ବାପ ଅନୁପସ୍ଥିତ । କି ଧାରଣା ନେଇ ସେମାନେ ଫେରି ଯାଇ ନ ଥିବେ ? ସେମାନେ କ'ଣ ଭାବି ନ ଥିବେ; ଏ ଜନ୍ମ ଦିନ ଉତ୍ସବରେ ତୁମର ମତ ନାହିଁ ବୋଲି ? ସେମାନେ କ'ଣ ଏଇ ଧାରଣା ନେଇ ଚାଲି ଯାଇ ନ ଥିବେ ଯେ, ମୁଁ ତୁମ ଇଚ୍ଛା ବିରୁଦ୍ଧରେ ଏ ଉତ୍ସବ ପାଳନ କରିଛି ବୋଲି ।

ଶୁଭ—କିଏ କ'ଣ ଭାବିଥିବ ବା ବିଚାରିଥିବ, ସେ ବିଷୟରେ କୌଣସି ନିଶ୍ଚିତ ଧାରଣା ତୁମର ନାହିଁ । ହୁଏ ତ କିଏ କିଛି ଭାବି ନ ଥିବେ, କି ସନ୍ଦେହ କରି ନଥିବେ । ତୁମେ ଖାଲି ନିଜ ସନ୍ଦେହୀ ମନରେ ଅବାନ୍ତର ଭାବନା ନେଇ ଅଯଥାରେ ମତେ ଦୋଷ ଦେଇଯାଉଛ; ମୁଁ ବୁଝି ପାରୁନ ! ମୁଁ ଯାଇ କୋଉଠି ଆଡ୍ଡା ମାରୁନଥିଲି, କି ତାସ ପଶା ଖେଳୁ ନଥିଲି; କୋଉଠି ବସି ମଦ ପିଉ ନଥିଲି, କି ନାଚ ଦେଖୁ ନଥିଲି ।

ସୀତା—ସେଇଥିଲାଗି ତୁମ ମନରେ ଏତେ ଦୁଃଖ ନା ? ସେଇସବୁ କାମ କରି ପାରୁଥିଲେ ବୋଧହୁଏ ମତେ ଟିକିଏ ଶାନ୍ତିରେ ରହିବାକୁ ଦିଅନ୍ତ । ତୁମ ମନରେ ରାଗ, ମୁଁ ତୁମକୁ ଚନ୍ଦ୍ରକାର ନାଚ ଦେଖିବାର ଆନନ୍ଦରୁ ବଞ୍ଚିତ କରିଛି । ତେଣୁ ତୁମେ ମତେ କୌଣସି ପ୍ରକାର ଆନନ୍ଦ ଦବନି; ଏଇଆ ନା ?

ଶୁଭ—(ପାଗଳଙ୍କ ପରି ମାରିବାକୁ ଆଗେଇଗଲା) ସୀତା ! ତୁମେ ଯାଅ ସୀତା; ତୁମକୁ ମୁଁ ଅନୁରୋଧ କରୁଛି ମତେ ଟିକିଏ ଏକୁଟିଆ ରହିବାକୁ ଦିଅ । (ବସିଲା)

ଗୀତା—ମାର; ମାରିଦିଅ ମତେ ! ତୁମକୁ ସୁଖୀ କରିବାକୁ ମୁଁ ପ୍ରାଣପଣେ ଚେଷ୍ଟା କରୁଚି । ମାତ୍ର ତୁମେ ମତେ ଆଘାତ ଦେବାକୁ ଆଗେଇ ଆସୁଚ ? ବେଶ୍, ସେଇଥିରେ ଯଦି ତୁମେ ଆନନ୍ଦ ପାଅ, ତା' ମଧ୍ୟ ସମ୍ଭବ । ଆସ, ଶେଷ କରିଦିଅ ମତେ; ଅଟକଗଲ କାହିଁକି ?

ଶୁଭ—ମୁଁ ଭୁଲ କରିଚି ଗୀତା ! ମତେ ତୁମେ କ୍ଷମାକର, ମତେ ତୁମେ କ୍ଷମାକର । (ମାତାଲ ପରି ଟଳି ଟଳି ପ୍ରସ୍ଥାନ)

...ଅ ନ୍ଧା ର...

---

## ତୃତୀୟ ଦୃଶ୍ୟ

[ ଦୁର୍ଗା ଘର; ଟେବୁଲ ଓ ଦୁଇଟି ଚୌକି । ସମୟ ସନ୍ଧ୍ୟା । ଦୁର୍ଗା ହିସାବ କରୁଚି । ମଧୁ ଜଳଖିଆ ଧରି ପ୍ରବେଶ ]

ମଧୁ—ଭାଇ ! ଜଳଖିଆ...

ଦୁର୍ଗା—ସୁବା ଖାଇସାରିଲାଣି ?

ମଧୁ—ସେ ତ' ସ୍କୁଲରୁ ଫେରିନି ।

ଦୁର୍ଗା—ହଉ, ଜଳଖିଆ ରଖିଦେ; ତାକୁ ଦେଇଦବୁ ।

ମଧୁ—ତା'ଲାଗି ମୁଁ ରଖିଚି; ଏ ତୁମର ଜଳଖିଆ ।

ଦୁର୍ଗା—ମୁଁ କ'ଣ ଉପରଓଳି ଜଳଖିଆ ଖାଏ ?

ମଧୁ—କେବେହେଲେ ଉପରଓଳ ତୁମେ ଘରେ ଛୁଅନ ବୋଲି ଜଳଖିଆ ଖାଅନ । ଆଜ ଅଚ୍ଛ ଯେତେବେଳେ, ଖାଇ ଦିଅ ।

ଦୁଗ—ଆଲେ ନାଇଁ ଲେ, ମୋର ଆଉ ଜଳଖିଆ ଖାଇବାର ବୟସ ଅଛି ? ଖାଲି ଚା' କପେ ନେଇଆ ।

ମଧୁ—ତୁମର ଯାହା ଖାଟେଣି, ସେଥିରେ ଯଦ ଖାଇବାରେ ହେଳାକର, ତେବେ ଦେହ ଖରାପ ହବ । ତୁମେ ଖାଇଦଅ; ମୁଁ ଚା' ଆଣି ଦଉଚ । (ପ୍ରସ୍ଥାନ)

ଦୁଗ—ମଧୁ ! ମଧୁ ! ମୋର ସେ ଚମଡ଼ା ବ୍ୟାଗ୍‌ଟା କାହିଁ ? ମଧୁ ! (ଡାକ ଡାକ ପ୍ରସ୍ଥାନ । କମ୍ବଳ ଘୋଡ଼େଇ ହୋଇ ବେଲୁନ୍ ପ୍ରବେଶ କର, ଚୃରିଆଡ଼କୁ ଚୃହିଁ, ଜଳଖିଆକୁ ଚୃହିଁଲ)

ମଧୁ—(ନେପଥ୍ୟ) ଭାଇ ! ବ୍ୟାଗ୍ ପାଇଲ ?

ଦୁଗ—ହଁ···ହଁ···ପାଇଲ ।

( ବେଲୁନ୍ ଟେବୁଲ୍ ତଳେ ଲୁଚିଗଲ୍ । ପ୍ରବେଶ କର ଦୁଗ ବସି ଲେଖିଲ୍)

ମଧୁ—ଭାଇ ! ଚା' ଜଳଖିଆ ଏତକ କ'ଣ ଖାଇଲ ! ସବୁତକ ଖାଇ ଦେଲନ ?

ଦୁଗ—(ଅନ୍ୟମନସ୍କ) ଏଁ ? ନାହିଁ; କହିଲି ପରା ଜଳଖିଆ ଖାଇବନ ବୋଲି ।

ମଧୁ—ଅଧେ ଯେତେବେଳେ ଖାଇଲ, ବାକ ଅଧକୁ କ'ଣ ପେଟରେ ଯାଗା ହେଲନ ?

ଦୁଗ—ଏଁ ? ଅଧେ ଖାଇଲ ? କେତେବେଳେ ଖାଇଲି ?

ମଧୁ—ତୁମର ମୁଣ୍ଡର ଅବସ୍ଥା ଭଲ ନାହିଁ । ତୁମେ କଛିଦନ ବିଶ୍ରାମ ନଅ । (ମଧୁ ପ୍ରସ୍ଥାନ । ଦୁଗ ଚା' ଖାଇ କାଗଜପତ୍ର କାମରେ ଲଗିଲ । ବେଲୁନ୍ ଆଗପର ପୁଣି ହାତ ବଢ଼େଇ ଜଳଖିଆ

ଖାଉଛନ୍ତି । ବେଲୁନ୍ ଦୁବ ହାତକୁ ସ୍ପର୍ଶ କରି ଜାଣିବାକୁ ଚେଷ୍ଟା କଲା—ସେଠା କ ଜଲଖିଆ ? ତା'ପରେ ଦେଖିଲା ଦୁବ ତାକୁ ଚିହ୍ନିଛି । ଦୁବ ତାକୁ ଟାଣିଲା)

ବେଲୁନ୍—ଏଁ ଦୁବଭାଇ କରେ !

ଦୁବ—ଆବେ ବେଲୁନ୍ ! ଦୋସ୍ତ, ତୁ ତା' ତଳେ କ'ଣ କରୁଛୁ ? ଆ·· ଆ···

ବେଲୁନ୍—ନାଇଁ, ଭାଇ ! ମୁଁ ଏଠି ଭଲ ଅଛି । ତୁ ଖାଲି ଜଲଖିଆ ଥାଳଟା ମତେ ବଢ଼େଇ ଦେ ।

ଦୁବ—ଆରେ କ'ଣ ହୋଇଛି ? ତୁ ଏ ଟେବୁଲ୍ ତଳେ କେତେ-ବେଳୁ ଆସି ଲୁଚିଛୁ ?

ବେଲୁନ୍—ଆରେ ଟେବୁଲ ତଳେ କ'ଣ—ଟ୍ରଙ୍କ୍, ବାକ୍ସ, ମୁଷାଗାତ, ଲଫାପା, ଯୋଉଠି ହେଲେ ମତେ ଲୁଚି ରହିବାକୁ ହବ ।

ଦୁବ—କାହିଁକି ? ଚୋରି କରିଛୁ ନା କ'ଣ ?

ବେଲୁନ୍—ଚୋରି ହୋଇଥିଲେ ତ' ରକ୍ଷା ମିଳିଥାନ୍ତା । ସ୍ପେ ପରି ଜୁଆଚୋରି ।

ଦୁବ—ଜୁଆଚୋରି ? କ'ଣ ହୋଇଛି କହିଲୁ ?

ବେଲୁନ୍— ଭାଇ ! ମତେ ଆଗ ଜଲଖିଆ ଥାଳଟା ଦେ ?

ଦୁବ—ନେ ··ଖା···କ'ଣ ହୋଇଛି ? (ବେଲୁନ୍ ଜଲଖିଆ ଖାଉଛି)

ବେଲୁନ୍—ଆରେ ଭାଇ ! ମତେ କୋଉଠି ଲୁଚେଇ ଦେ; ନହେଲେ ମାଡ଼ରେ ଛତୁ ଫୁଟିଯିବ ।

ଦୁବ—ମାଡ଼ ? ତତେ ପୁଣି କିଏ ମାରିବାକୁ ଗୋଡ଼େଇଛନ୍ତି ?

ବେଲୁନ୍—ଲୋକମାନେ ! ଆରେ ଭାଇ ! ହୋଟେଲରେ ବାସି ମାଂସକୁ ଚୋପିଆଜ କରି ବିକିଛି, ବାସି ଭାତକୁ ଗରମ

ଭାତରେ ମିଶାଇ ଗରୀବଙ୍କୁ ଦେଉଛ, ଭେଜାଲ୍ ତେଲ
ଘିଅରେ କାମ କରୁଛ ·

ଦୁରୀ—ହଇରେ, ଗରୀବଙ୍କ ଲୁ ପଚୁସଢ଼ା ସବୁ ଖାଇବାକୁ ଦଉଚୁ...
ସେମାନେ ବଞ୍ଚିଲେ କେମିତି ?

ବେଲୁନ୍—ଆଉ ବଞ୍ଚିଲେ କୋଉଠି ? ସାତଜଣ ପରା ମରିଗଲେଣି ।

ଦୁରୀ—କ'ଣ କହୁଲୁ ? ସାତଜଣ ?

ବେଲୁନ୍—ଆରେ ଯୋଉମାନେ ମରିଗଲେ, ସେ ତ ତରିଗଲେ ! ଯେଉଁମାନେ ନ ମରି ଡାଇରିଆ, ଡିସେଣ୍ଟ୍ରି, କଲେରାରେ ପଡ଼ିଚନ୍ତି, ତାଙ୍କୁ ତ ମୁଁ ଡାକଦାରେ ପକେଇନି ।

ଦୁରୀ—ଆରେ କେତେଜଣ ତ ମଲେ ମଲେ, ବାକି କେତେଜଣ ତ ଜଟାଳଗା ହେଲେ; ଆଉ ତତେ ମାରିବାକୁ ଆସିଲେ କି ?

ବେଲୁନ୍—ଆରେ ସେ ଗରୀବଙ୍କର ଭାଇ ବନ୍ଧୁ । ଆରେ ଭାଇ, ଆଜି ସକାଳୁ ତିରିଶଜଣ ଠେଙ୍ଗାବାଡ଼ି ଧରି, ହୋଟେଲ ଉପରେ ଚଡ଼ାଉ କଲେ । ପୋଲିସ, ସ୍ୱାସ୍ଥ୍ୟବିଭାଗ ହାକିମ ··ସମସ୍ତେ ଏକାଠି ହେଇଯାଇଚନ୍ତି । ଚୋର ଧର୍ମ ହେବ ଭାଇ ! ମତେ ଦଶ ପନ୍ଦର ଦିନ କୋଉଠି ଲୁଚେଇ ଦେ । ଅବସ୍ଥା ଥଣ୍ଡା ପଡ଼ିଲେ ପୁଣି ଯାହା ବ୍ୟବସ୍ଥା କରିବ—ହେଲେ ଏଇଲାଗେ ଗରୀବଙ୍କ ମାଡ଼ରୁ ରକ୍ଷା କରିଦେ ।

ଦୁରୀ—ଯେମିତି ବିଷ ଖୁଆଇଚୁ ସେମିତି ମାଡ଼ ଖାଆନ୍ତ ମୋର କ'ଣ ଅଛି ?

ବେଲୁନ୍··ଏ ଭାଇ ! ମୋର ଗୋଟିଏ ବୋଲି ସାଙ୍ଗ ତୁ ଅଛୁରେ ! ମତେ ବଞ୍ଚା ଭାଇ; ନ ହେଲେ ବେଲୁନ୍‌ର ସବୁ ହାଡ଼ ବାହାରିଯିବ ।

ଦୁର୍—ଆସ୍ତୁ···ଆସ୍ତୁ···ଚାଲ ମୋ ସାଙ୍ଗରେ । ଆଜ ମୁଁ ଟ୍ରକ ନେଇ ବ୍ରହ୍ମପୁର ଯାଉଛି···ମୋ ସାଙ୍ଗରେ ଚାଲ, ସେଇଠି ଦ'ପାଞ୍ଚଦିନ ଲୁଚି ରହ । ତା'ପରେ ଯାହା ବ୍ୟବସ୍ଥା କରିବା···

ବେଲୁନ୍—ହଉ ଚାଲ-ଭାଇ ଚାଲ ! ଏ ସହର ଛାଡ଼ିଦେଲେ ଯାଇ ଟିକେ ଉଶ୍ବାସ ହେବ ।

ଦୁର୍—ମଧୁ ! ଦ୍ଵାର ବନ୍ଦକର; ମୁଁ ଟିକେ ବାହାରକୁ ଯାଉଛି । ଆ···ଚାଲ୍ ମୋ ସାଙ୍ଗରେ (ପ୍ରସ୍ଥାନ । ମଧୁ ଚା'କପ୍ ଧରି ଭିତରକୁ ଯାଇ ରଖି ଆସି ଉଲ୍ ବୁଣିବସିଲା । ବାହାରେ ଦ୍ଵାର ବାଡ଼େଇବା ଶୁଣାଗଲା)

ମଧୁ—କିଏ ?

ଶୁଭ—(ନେପଥ୍ୟ) ଦୁର୍ଯ୍ୟୋଧନ ବାବୁ ଅଛନ୍ତି କି ?

ମଧୁ—ନା···ବାହାରକୁ ଯାଇଛନ୍ତି ?

ଶୁଭ—(ନେପଥ୍ୟ) ସୁବ୍ରତ ଅଛି ?

ମଧୁ—ଭିତରକୁ ଆସନ୍ତୁ । (ଶୁଭ ଆସିଲେ; ମଧୁ ଚମକିଲା ଦେଖି । ହାତରୁ ତା'ର ଖସି ପଡ଼ିଲା ଉଲ୍ । ସେ ପ୍ରବେଶି ଅପ୍ରସ୍ତୁତ ହେଇଛି । ମଧୁ ଓଢ଼ଣାତଳେ ଆତ୍ମଗୋପନ କରିଛି)

ଶୁଭ—କ୍ଷମା କରିବେ, ମୁଁ ସୁବ୍ରତର ବନ୍ଧୁ ।

ମଧୁ—ବନ୍ଧୁ ?

ଶୁଭ—ହଁ; ଯେତୁ ମାନେ, ଆମେ ଅବଶ୍ୟ ଦୁହେଁ ସମବୟସ୍କ ନୋହୁଁ, ତେବେ ମଧ୍ୟ ଘନିଷ୍ଠତା ଆଉ ହାର୍ଦ୍ଦିକତା ଆମ ଭିତରେ ଯଥେଷ୍ଟ ଅଛି ।

ମଧୁ—ବସିବେନି ?

ଶୁଭ—ଧନ୍ୟବାଦ୍ ! ମୋର ନାଁ ଶୁଭେନ୍ଦୁ ମିଶ୍ର । ମୁଁ ଏଠା କଲେଜର ପ୍ରଫେସର୍ ।

ମଧୁ—ଜାଣେ ।

ଶୁଭ—ଆପଣ ମତେ ଜାଣନ୍ତି ?

ମଧୁ—ହଁ। ଶୁଣିଚି । ଆପଣ ଦୁଇଟା **M. A.** ପାଶ୍ କରି ତୃତୀୟ **M. A.** ଲାଗି ପ୍ରସ୍ତୁତ ହେଉଚନ୍ତି । ଡକ୍ଟ୍ରେଟ୍ ପାଇଚନ୍ତି ।

ଶୁଭ—ଆପଣ ମୋ ବିଷୟରେ ଅନେକ ଖବର ରଖିଚନ୍ତି ଦେଖୁଚି ।

ମଧୁ—ବଡ଼ଲୋକ, ଗୁଣୀଲୋକଙ୍କୁ ସମସ୍ତେ ଜାଣନ୍ତି । ଆମ ପରି ଗରିବ ମୂର୍ଖ ଯିନା ଅପରିଚିତ ହୋଇ ରହିବାର ଯୋଗ୍ୟ ।

ଶୁଭ—ଆରେ ନା-ନା, ସେ କଥା କାହିଁକି କହୁଚନ୍ତି ? ଆମର ସାମ୍ୟବାଦୀ ସମାଜ ଗଢ଼ା ଯାଉଚି । ମୂର୍ଖହୋଇ କେହି ରହିବେନି । ଗରିବ ହୋଇ କେହି ରହିବେନି। ଶିକ୍ଷା, ସମ୍ମାନ, ଆଉ ସବୁ ବିଷୟରେ ସମତା ରକ୍ଷା କରାଯିବ। ଆପଣ ମୋତେ କ୍ଷମା କରିବେ; ଆପଣଙ୍କ ପରିଚୟ ଏ ପର୍ଯ୍ୟନ୍ତ ପାଇଲିନି !

ମଧୁ—ମୋର ପରିଚୟ ? ସ୍ତ୍ରୀର ପରିଚୟ ତା'ର ସ୍ୱାମୀ । ମାତ୍ର ସେତିକ ଯେତେବେଳେ ମୋର ନାହିଁ, କ'ଣ ବୋଲି ପରିଚୟ ଦେବି କୁହନ୍ତୁ ? ତେବେ ସୁବ୍ରତର ବୋଉ ବୋଲି ପରିଚୟ ଦେଲେ ଯଥେଷ୍ଟ ।

ଶୁଭ—ଓଃ, ଆପଣ ସୁବ୍ରତର ମା ? ଦୁର୍ଯ୍ୟୋଧନ ବାବୁଙ୍କ ଭଉଣୀ । ନମସ୍କାର ଆଜ୍ଞା ! ଆପଣଙ୍କ ସାଙ୍ଗରେ ପରିଚୟ ହେବାର ଇଚ୍ଛା ଥିଲି । କାରଣ ସୁବ୍ରତ ପରି **Brilliant** ପିଲାର ମା' ଜଣେ ସର୍ବଗୁଣସମ୍ପନ୍ନା ରମଣୀ ହୋଇଥିବେ ବୋଲି ମୋର ବିଶ୍ୱାସ ।

ମଧୁ—ସର୍ବଗୁଣସମ୍ପନ୍ନା ? ନା, ଆପଣଙ୍କର ଭୁଲ୍ ହେଉଚି । ମୋର କିଛିମାତ୍ର ଗୁଣ ଯଦି ଥାଏ, ତେବେ କ'ଣ ଆଜି ମତେ ସ୍ୱାମୀଙ୍କ

ପରିଚୟ ବଦଳରେ ଘର ଓ ପୁଅର ପରିଚୟରେ ପରିଚୟ ଦବାକୁ ପଡ଼ନ୍ତା ? –ଗ୍ଡ଼ଡ଼ନ୍ତୁ, ଟିକଏ ଅପେକ୍ଷା କରନ୍ତୁ; ସୁବା ବର୍ତ୍ତମାନ ସ୍କୁଲରୁ ଫେରିବ ।

(ମଧୁ ଲୁହ ପୋଛୁ ପ୍ରସ୍ଥାନ । ଶୁଭର ନଜର ପଡ଼ିଲା ଉଲ୍‌କଣ୍ଟା ଉପରେ; ଉଠେଇ ଦେଖିଲା । ଭସିଆସିଲା ଚନ୍ଦ୍ରକାର କଣ୍ଠସ୍ୱର —"ତୁମେ ଶୀଘ୍ର ଯାଇ ବଜାରରୁ ଉଲ୍ ପାଉଣ୍ଡେ କିଣିନେଇ ଆସ । ଦିନ ଥାଉ ଥାଉ ଯାଅ; ସନ୍ଧ୍ୟା ଆଗରୁ ଫେରି ଆସିବ ।"

"ଶୁଭର କଣ୍ଠସ୍ୱର—ସେ ଉଲ୍‌ରେ ଛୋଟ ଛୋଟ ମୋଜା, ଛୋଟ ଟୋପିଟିଏ ଆଉ ଛୋଟଜାମା ଦ'ଟା ତିଆରିକରିବ ନା?

"ଚନ୍ଦ୍ରକାର କଣ୍ଠସ୍ୱର—ହୁଁ, ତୁମେ ଗଲ, ଏଇ ନିଅ ଟଙ୍କା, ସନ୍ଧ୍ୟା ଆଗରୁ ଫେରି ଆସିବ ।"

ଶୁଭ ଉଲ୍ ଓ କଣ୍ଟା ରଖି ପକେଟରୁ **Purse** କାଢ଼ି ତା'ଭିତରୁ ଅଧାବୁଣା ଛୋଟ ମୋଜା ଗୋଟିଏ କାଢ଼ି ଦେଖିଲା । ଚ୍ଚ' ଧରି ଆସିଲା ମଧୁ; ଟେବୁଲ ଉପରେ ରଖିଲା)

ଶୁଭ—ଆପଣ ଖୁବ୍ ସୁନ୍ଦର ଉଲ୍ କାମ ଜାଣନ୍ତି ତ ?

ମଧୁ—କିଛି କିଛି ଶିଖିଚି ।

ଶୁଭ—ପିଲାଙ୍କ ଲାଗି ଛୋଟ ଛୋଟ ମୋଜା, ଟୋପି, ଛୋଟ ଜାମା, ଏସବୁ ତିଆରିକରି ଜାଣିଥିବେ ନିଶ୍ଚୟ ?

ମଧୁ—ଜାଣେ; ମାତ୍ର ଆଜି ଆଉ ତା'ର ପ୍ରୟୋଜନ କ'ଣ ?

ଶୁଭ—ଏଁ ? ନା—ଆଜି ଅବଶ୍ୟ ତା'ର ପ୍ରୟୋଜନ ନାହିଁ,ତେବେ··

ମଧୁ—ଚ୍ଚ' ଥଣ୍ଡା ହେଇଯାଉଚି ।

ଶୁଭ—ଏଁ ? ହଁ···(ଖାଇଲା) ଆରେ, ମୁଁ ବେଶି ଚିନି ଭଲପାଏ ବୋଲି ଆପଣ କିମିତି ଜାଣିଲେ ? (ମଧୁ ନୀରବ) ଦେଖନ୍ତୁ,

ମତେ କ୍ଷମା କରିବେ; ପ୍ରଥମ ପରିଚୟରେ ମୋର ବ୍ୟବହାରଟା ଟିକିଏ ସୌଜନ୍ୟତାର ବାହାର ହୋଇଯାଉଛି । ମୋର ମୁଣ୍ଡ ଠିକ୍ ହବା ଦିନଠୁ ମୁଁ କମିତି ଟିକିଏ, ମାନେ—

ମଧୁ—ଆପଣଙ୍କ ମୁଣ୍ଡ ଖରାପ ହୋଇଯାଇଥିଲା ନା କ'ଣ ?

ଶୁଭ—ଆଜ୍ଞା ହଁ; ସେ ପ୍ରାୟ ଦଶ ବର୍ଷ ତଳର କଥା । ଦଶ ବର୍ଷ, **My God ! It is a big way off;** ମାତ୍ର କାଲିପରି ମନେ ହେଉଛି ସବୁ କଥା ।

ମଧୁ—କାଲି ପରି ?

ଶୁଭ—ହଁ-ଏଇତ ସେଦିନ—ଏଇଳି ଫୁଲ, ଏମିତି ଭଲ କାମ, ଏମିତି ଉପରବେଳେ, ଆଉ ଏଇପରି—ତୁମେ, ଆପଣ—କିଏ ଆପଣ ? କିଏ ? (ମଧୁ ନୀରବ) କିନ୍ତୁ ସେ ଥିଲା ମୋର ସ୍ତ୍ରୀ, ମୋର ସେବିକା, ମୋର···ମା, ସିଏ ମଧୁ ! ମଧୁ ।

(ସୁବା ପ୍ରବେଶକରି ପ୍ରଣାମ କଲା)

ସୁବା—ବୋଉ, ବାପା ଆସିଚନ୍ତି କି ? ବାପା, ଆରେ **Sir !** ଆପଣ ଆସିଚନ୍ତି ?

ଶୁଭ—ସାର୍ ? ସାର୍ ? (ସବୁ ସ୍ୱପ୍ନ ଭାଙ୍ଗିଲା) ଏଁ, ହଁ; ତୁମକୁ ଆଉ ତୁମର ମା' ଙ୍କୁ ଦେଖିବାକୁ ସିଧା କଲେଜରୁ ଚାଲି ଆସିଲି । ଚାଲ, ଆମ ଘରକୁ ଚାଲ; ସେଇଠି କଥାବାର୍ତ୍ତା ହବା ।

ସୁବ୍ରତ—ବୋଉ, ସାର୍ଙ୍କ ସାଙ୍ଗରେ ମୁଁ ଯିବି ? (ମଧୁ ନୀରବ)

ଶୁଭ—ଦେଖନ୍ତୁ, ଅଜାଣତରେ ଯଦି କିଛି ଭୁଲ କରିଥାଏ ତେବେ କ୍ଷମା ଦେବେ । ମୁଁ ସୁବ୍ରତକୁ ସାଙ୍ଗରେ ନେଇ ଯାଉଛି; ସନ୍ଧ୍ୟା ପୂର୍ବରୁ ପଠେଇ ଦେବି । ( ମଧୁ ନୀରବ ) ସୁବ୍ରତ, **Come on ! Let's go !** ( ଦୁହେଁ ହାତ ଧରାଧରି ହୋଇ

ଭୁଲିଗଲେ । ମଧୁ ଭୁଲିଁ ରହିଲା ଯିବା ବାଟକୁ; ମଧୁ ଧୈର୍ଯ୍ୟ ରଖିପାରିଲା ନା...କଇଁ କଇଁ କାନ୍ଦଉଠି ଶୁଭ ଛୁଡ଼ାହୋଇଥିବା ସ୍ଥାନରୁ ଧୂଳି ନେଇ ମୁଣ୍ଡରେ ବୋଳିବାକୁ ଲଗିଲା )

—ଅନ୍ଧାର—

—:o:—

## — ଚତୁର୍ଥ ଦୃଶ୍ୟ—

[ ସଂନ୍ଧ୍ୟା ଉର୍ଦ୍ଧ ରୁମ୍‌ରେ ନର୍ତ୍ତକୀ ବେଶରେ ସ୍ୱାତୀ ବେଳେ ବେଳେ ନାଚ ଉଠିଚ, ଗାଇ ଉଠିଚ, କପର ସ୍ୱାମୀଙ୍କ ମନ ଜୟ କରିବ । ଶୁଭର ସ୍ୱର ତା କାନରେ ବାଜୁଛି—"ସ୍ୱାତୀ, ତୁମକୁ ଅନୁରୋଧ କରୁଚ, ମତେ ଟିକଏ ଶାନ୍ତିରେ ରହିବାକୁ ଦିଅ ।" ଦୂରରୁ ଭାସିଆସିଲା ମ୍ୟାଉଁ-ମ୍ୟାଉଁ ଡାକ ]

ସ୍ୱାତୀ—ରଘୁଆ...ରଘୁଆ !

ରଘୁ—(ନେପଥ୍ୟ) ମା !

ସ୍ୱାତୀ—ସେ ବିଲେଇଟାକୁ ଘଉଡ଼ ଦେଲୁ । ବାବୁଙ୍କର ଆସିବା **time** ହେଲାଣି; ତତେ କ'ଣ ଜଣା ପଡ଼ୁନି ? କାହାର ସେ ବିଲେଇ ଗୁଡ଼ାକ କେଜାଣି, ସବୁବେଳେ ଗୋଟେ ନା ଦି'ଟା ଘରେ ବୁଲୁଥିବେ । ଘଉଡ଼ ଦେଲୁ ରଘୁଆ !

ମଣି - (ପ୍ରବେଶି) ଗଲାଣି, ଗଲାଣି ନୂଆବୋଉ ! ତୁମେ କାହିଁକି ଏତେ ବ୍ୟସ୍ତହଉଚ ?

ସୀତା—ମୋ ଅପେକ୍ଷା ତୁମ ଭାଇ ଯେ କେତେ ବ୍ୟସ୍ତ ହୁଅନ୍ତି ତୁମେ କ'ଣ ଜାଣିନ ?

ମଣି—ଆରେ ନୂଆବୋଉ ! ତୁମର ଆଜ ଏ କି ବେଶ ?

ସୀତା—ଭଲ ଦେଖାଯାଉଛି ?

ମଣି—ଭଲ ଦେଖାଉଛ ଯେ—ହେଲେ ଭଦ୍ରଘରର ଝିଅ-ବୋହୂ ଭଳି ଦିଶୁନ ।

ସୀତା—ତେବେ ଠିକ୍ ଅଛି, ମୁଁ ତ ଭଦ୍ରଘରରେ ନିଜକୁ ପରିଚୟ ଦବାକୁ ଚାହେଁନି; ମୁଁ ଚାହେଁ ପତିତା, ନାଚବାଲି ଭାବରେ ନିଜକୁ ଉପସ୍ଥାପିତ କରିବାକୁ ।

ମଣି—କାହା ଆଗରେ ?

ସୀତା—ତୁମ ଭାଇଙ୍କ ଆଗରେ—ମୁଁ ଆଜ ନାଚି ଗାଇ ତାଙ୍କୁ ମୁଗ୍ଧ କରିଦବାକୁ ଚାହେଁ ।

ମଣି—ଛି...ଛି...ଏ ସବୁ କ'ଣ କହୁଚ ? ଏଇଟା ଭଦ୍ରଲୋକର ଘର; ତୁମେ ଭଦ୍ରଲୋକର ସ୍ତ୍ରୀ—ଏକଥା ଭୁଲିଯାଉଚ କାହିଁକି ?

ସୀତା—ହୁଃ, ଭଦ୍ରଲୋକର ସ୍ତ୍ରୀ ? ସେ ଅଭିମାନ ଦିନେ ମୋର ଥିଲା ମଣି ! ବଡ଼ ଡାକ୍ତରଙ୍କର ଶିକ୍ଷିତା ଝିଅ ବୋଲି ମୋର ଗର୍ବ ଥିଲା; ଜଣେ ପ୍ରଫେସରଙ୍କ ସ୍ତ୍ରୀ ବୋଲି ମୋର ଅହଙ୍କାର ମଧ୍ୟ ଥିଲା । ହେଲେ ବିବାହର ଆଠ ବର୍ଷ ଭିତରେ ସେସବୁ କିଏ ଚୋରି କରି ନେଲା ଜାଣ ? ଜାଣ, କିଏ ଆଜ ମତେ ନାଚବାଲି ବେଶରେ ଛିଡ଼ା କରିଛି ? ତୁମ ଭାଇ !...

ମଣି—ନୂଆବୋଉ !

ସୀତା—ହଁ ମଣି ! ତୁମ ଭାଇ । ମୋର ସ୍ୱାମୀ ଆଜ ମତେ ଏତେ ତଳକୁ ଟାଣି ଆଣିଚନ୍ତି । ତାଙ୍କର ଟିକିଏ ସ୍ନେହ, ଟିକିଏ

ଆଦର ପାଇଁ ଆଠ ବର୍ଷ ଧରି ମୁଁ ଅକ୍ଳାନ୍ତ ଚେଷ୍ଟା କରିଚି ମଣି ! ହେଲେ ପାଇଚି ଖାଲି ଅବହେଳା, ଅନ୍ୟମନସ୍କତା ।

ମଣି—ନା-ନା, ଏ ଧାରଣା ତୁମର ଭୁଲ୍ ନୂଆବୋଉ ! ଆଠ ବର୍ଷ ସଂସାର କରି ତୁମେ କ'ଣ ଭାଇଙ୍କୁ ଚିହ୍ନି ପାରିଲ ନାହିଁ ? ସେ ସରଳ, ନିର୍ମଳ । ଏ ଝକାକଣା ଦୁନିଆଁ ଭିତରେ ସେ ନିଜଲାଗି ଗଢ଼ିଛନ୍ତି ତାଙ୍କର ସ୍ୱପ୍ନର ସଂସାର । ତାଙ୍କର ସେ ସେ ସ୍ୱପ୍ନ ଭିତରେ ଖାଲି ଅଛି ଗଦାଗଦା ବହି, ଆଉ ଜ୍ଞାନ-ପିପାସା ।

ସୀତା—ମିଛ; ତୁମେ ଠକିଯାଇଚ ମଣି ! ତୁମ ଭାଇଙ୍କ ବାହାରର ଆବରଣ ଦେଖି ତୁମେ ପ୍ରତାରିତ ହେଇଚ । ସେ ନିଜଲାଗି ସ୍ୱପ୍ନର ସଂସାର ଗଢ଼ିଚନ୍ତି, ଏକଥା ସତ; ମାତ୍ର ସେ ସ୍ୱପ୍ନ ଭିତରେ ବହି ବା ଜ୍ଞାନର ପିପାସା ନାହିଁ ମଣି ! ଅଛି ଗୋଟାଏ ନାଚବାଲିର ମୋହ, ଆଉ ନାଚଗୀତର ପିପାସା ।

ମଣି—ନୂଆବୋଉ !

ସୀତା—ମୁଁ ଭୁଲ୍ କହୁନି ମଣି ! ତୁମ ଭାଇ ଦଶବର୍ଷ ତଳର ସେଇ ସ୍ମୃତିକୁ ଏବେ ବି ତାଙ୍କ Purseରେ ଲୁଚେଇ ରଖିଚନ୍ତି । ମୋ'ରି ଦଂଶନରୁ ନିଜକୁ ରକ୍ଷା କରିବାଲାଗି ତାଙ୍କର ଏ ଜ୍ଞାନ-ପିପାସାର ଛଳନା । କୁହ ମୁଁ କ'ଣ କରିବି ? ମତେ କହିଦିଅ କ'ଣ କଲେ ମୁଁ ଚନ୍ଦ୍ରିକାକୁ ତାଙ୍କ ମନରୁ ପୋଛିଦେଇ ପାରିବି ? ଆଠ ବର୍ଷ ଭିତରେ ଦିନେହେଲେ ବାପାଙ୍କ ପାଖକୁ ଯାଇନି । ପ୍ରତିଟି ଘଣ୍ଟା, ପ୍ରତିଟି ଦିନ ତାଙ୍କର ସେବା, ତାଙ୍କର ଚିନ୍ତା, ତାଙ୍କର ମଙ୍ଗଳକାମନା କରି ଆସିଚି । ତାଙ୍କ ଲାଗି ନିଜର ସବୁ ଅଭିମାନ, ଗର୍ବକୁ ନିଜେ ଭାଙ୍ଗି ଚୂନା କରି ଦେଇଚି । ନିଜ ସ୍ଥିତିକୁ ଅବହେଳା କରିଚି; କିନ୍ତୁ···କିନ୍ତୁ ପରିଣାମରେ କ'ଣ

ପାଇଛ ଜାଣ ? ତୁମ ଭାଇ ପ୍ରତ୍ୟେକ ମୁହୂର୍ତ୍ତରେ ତାଙ୍କ କାର୍ଯ୍ୟକଳାପ ଦ୍ୱାରା ବୁଝେଇ ଦେଇଛନ୍ତି ଯେ, ମୁଁ ଗୋଟାଏ ଅଦରକାରୀ ଜୀବ । ତାଙ୍କ ନିକଟରେ ମୋର କିଛିମାତ୍ର ମୂଲ୍ୟ ନାହିଁ । କୁହ, କୁହ ମଣି ! ଚନ୍ଦ୍ରିକା ପାଖରେ କ'ଣ ଥିଲା, ଯାହା ମୋ ପାଖରେ ନାହିଁ ? କେଉଁ ଗୁଣରେ ଗୋଟାଏ ନାଚବାଲୀ ମୋଠୁ ବଡ଼ ?

ମଣି—ନୂଆବୋଉ ! ସ୍ନେହ, ଭଲପାଇବା ବଜାରସଉଦା ନୁହେଁ । ବହୁତ ପରିଶ୍ରମ ବଦଳରେ ଟିକିଏ ସ୍ନେହ କିଣାଯାଇ ପାରେନି; ପୁଣି କିଛି ନ ଦେଇ ମଧ୍ୟ ପ୍ରାଣ-ଉଜୁଡ଼ା ସ୍ନେହ ମିଳିପାରେ । ମନଭିତରେ ଈର୍ଷା ନେଇ ପ୍ରତିଦ୍ୱନ୍ଦିତା କଲେ ତୁମେ ସ୍ନେହ ପାଇବ କିମିତି ?

ସୀତା—ଈର୍ଷା, ପ୍ରତିଦ୍ୱନ୍ଦିତା ?

ମଣି—ହଁ ନୂଆବୋଉ, ତୁମେ ଆଗ ନୂଆବୋଉଙ୍କୁ ସେତେବେଳେ ମଧ୍ୟ ଈର୍ଷା କରୁଥିଲ । ସେତେବେଳେ ମଧ୍ୟ ତାଙ୍କୁ ନିଜର ପ୍ରତିଦ୍ୱନ୍ଦୀ ବୋଲି ପରୀକ୍ଷା କରିବାକୁ ଚେଷ୍ଟା କରୁଥିଲ । ସେ'ତ ହାରିଯାଇ ଚାଲିଗଲେ; ମାତ୍ର ଏଇ ଆଠବର୍ଷ ଧରି ତୁମେ ସେ ପ୍ରତିଦ୍ୱନ୍ଦୀ ମନୋଭାବ କାହିଁକି ରଖିଛ ନୂଆବୋଉ ? ତାଙ୍କୁ କାହିଁକି ଶତ୍ରୁ ଭାବରେ ଦେଖୁଛ ?

ସୀତା—ଶତ୍ରୁ...ସେଇ ମୋର ଶତ୍ରୁ ! ମୋର ସହପାଠୀ, ମୋର ବନ୍ଧୁକୁ ମୋଠୁ ଛଡ଼େଇ ନେଇ ନିଜର କରିନେଲା । ଯାହାର ସେବା କରିବାକୁ ମୁଁ କୁଣ୍ଠିତା ହେଲି ତାକୁ ସେ ସୁଯୋଗକରି ମୋ ଦୁର୍ବଳତାକୁ ଥଟ୍ଟାକଲା...ଗୋଟାଏ ପତିତା...ନାଚବାଲୀ..

ମଣି—ସେଇ ଅହଙ୍କାର ତୁମକୁ ଜାଳିଦେଇଛି ନୂଆବୋଉ !

ସୀତା—ମଣି ?

ମଣି—ଯେତେଦିନଯାଏ ତୁମେ ମଣିଷ ମଣିଷ ଭିତରେ ଉଚ୍ଚ-ନୀଚ, ଶ୍ରେଷ୍ଠ-ବଡ଼ର ପ୍ରଭେଦ ଦେଖୁଥିବ, ସେତେଦିନ ପର୍ଯ୍ୟନ୍ତ ତୁମର ଜ୍ୱାଳା କମିବ ନାହିଁ । ଆଗ ନୂଆବୋଉ ତୁମଠୁ କୌଣସି ଗୁଣରେ ଶ୍ରେଷ୍ଠ ନଥିଲେ; ବରଂ ତାଙ୍କର ମନ ତୁମଠାରୁ ନିର୍ମଳତର ଥିଲା—ତାଙ୍କର ହୃଦୟ ତୁମଠାରୁ ମହତ୍ତର ଥିଲା ।

ସୀତା—ମଣି, ତୁମେ ଏ କଥା କହି ପାରିଲ ?

ମଣି—ମିଛ କହୁନି ନୂଆବୋଉ ! ଏ ଘରେ ଆଜ ମୁଁ କେହି ନୁହେଁ । ତେଣୁ ତୁମରି ଘରେ ଛିଡ଼ାହୋଇ ତୁମକୁ ସମାଲୋଚନା କରୁଛି ବୋଲି ମତେ କ୍ଷମା ଦିଅ । କିନ୍ତୁ ଯାହା ସତ, ତା' ବୁଝିବାକୁ ଚେଷ୍ଟାକର । ତୁମେ ଆଗ ନୂଆବୋଉକୁ ଧକ୍କା ଦେଇ ବାହାର କରିଦେଇଛ ଦଶ ବର୍ଷ ହେଲା; ମାତ୍ର ଏଇ ଦଶ ବର୍ଷ ଧରି ଅକ୍ଲାନ୍ତ ପରିଶ୍ରମ କରି ମଧ୍ୟ ତାକୁ ତୁମେ ଜୟକରି ପାରିନ । ତୁମେ ହାରିଯାଇଛ ନୂଆବୋଉ ! ତୋଳା-କନିଆଁ ହୋଇ ଯିଏ ଏ ଘରକୁ ଆସିଥିଲା ତା'ରି ହୋଇଛି ବିଜୟ । (ପ୍ରସ୍ଥାନ । ପ୍ରବେଶ କଲେ ସବିତା)

ସବିତା—ମଧୁ...ମଧୁ...ତୁ ଆସିଚୁ ? ଏତେଦିନ ପରେ ତୁ ଆସିଚୁ ମା' ? ସେଦିନ ଅଭିମାନରେ କ'ଣ କହିଦେଇଥିଲି ବୋଲି ଏତେଦିନ ଧରି ମତେ କନ୍ଦାଇଲୁ ? ତୋର ବୋଉ ଉପରେ ତୋର ଟିକିଏ ହେଲେ ଦୟା ହେଲାନି ? କାହିଁ ଦେ'ଲେ ! ମୋ ନାତି କାହିଁ ଦେଲୁ ? ମୁଁ ତାକୁ ଟିକିଏ କୋଳ କରେ...ଆଲେ, ମୋ ବଂଶର ମଣିଷକୁ ଦେ'ଲୋ ! (ସବିତା ସୀତାକୁ କୁଣ୍ଢାଇଦେଲା; ତାଙ୍କର ସ୍ୱପ୍ନ ଭାଙ୍ଗିଗଲା)

ସୀତା—ବୋଉ, ଆପଣ ବି ମତେ ଶ୍ରେଷ୍ଠ କରିଦେଲେ ?

ସବିତା—ଏଁ, ଗ୍ରେଟ ? ହଁ ଗ୍ରେଟଟିଏ ହୋଇଥିବ ତ ! ଟିକଟିଏ ହୋଇଥିବ ତ !

ସୀତା—କାହିଁକି ? ବୋଉ ! ମୁଁ କାହାର କ'ଣ ଅପକାର କରିଛି, କାହାକୁ କି କଷ୍ଟ ଦେଇଛି ? ମୋ ପ୍ରତି ସମସ୍ତଙ୍କର କାହିଁକି ଏ ଅବିଶ୍ୱାସ ? ଘରର ମାନ-ସମ୍ମାନ ଲାଗି ଯାହା କର୍ତ୍ତବ୍ୟ ମୁଁ ତ ସେଥିରେ ହେଳା କରିନି; ପରିବାରର ସୁଖଶାନ୍ତି ଲାଗି ଯାହା କରିବା କଥା ସବୁ ତ' ମୁଁ କରିଛି । ତେବେ ସମସ୍ତେ ମିଶି ମତେ କାହିଁକି ଏ ଅଶାନ୍ତି ନିଆଁରେ ଜାଳୁଛନ୍ତି ?

ସବିତା—କାନ୍ଦୁଛୁ ? କିଏ ତୋ ଦୁଃଖ ବୁଝିବ ? କିଏ ତୋ ଲୁହ ଦେଖିବ ? ସେ'ତ ସିମିତି ବିକଳରେ ଡାକ ପାରି ପାରି ଗଲା । କେହି କ'ଣ ଶୁଣିଲେ ? ମୁଁ ତ' ନିଜେ ଠାକୁର ଘର ଦୁଆର କିଳି ପଡିଥିଲି; ମୁଁ କ'ଣ ଶୁଣିଲି ? ହଁ, ଶୁଣିନି ଆଉ କ'ଣ ? ଶୁଣିଲି ଯେ, ହେଲେ କ'ଣ କଲି ? ପଥର ହୋଇ ବସିରହିଲି । ତାକୁ ଟାଣିଓଟାରି ବାହାର କରିଦେଲେ; ତା' ଉହାଳ-ବିକଳ କିଏ ଶୁଣିଲା ? ତା' କାନ୍ଦ କିଏ ଦେଖିଲା ? ତୁ ଆଜି କାନ୍ଦୁଛୁ ଯେ, କିଏ କ'ଣ କରିବ ?

ସୀତା—ଓଃ ବୋଉ ! ଆପଣ ମଧ୍ୟ ମତେ କଷ୍ଟ ଦେବାକୁ ଆସିଛନ୍ତି ?

ସବିତା—ଏଁ ? ନାଇଁ-ନାଇଁ···ମୁଁ କାହିଁକି କାହାକୁ କଷ୍ଟ ଦେବି ? ମୁଁ ତ' ମୋର ପ୍ରାୟଶ୍ଚିତ୍ତ ନେଇ ବ୍ୟସ୍ତ ଅଛି । ଅନ୍ୟକାମ ଲାଗି ମତେ ଫୁରୁସତ୍ କାହିଁ ? ଛି···ଛି···ସବୁ ଅପବିତ୍ର କରିଦେଲେ; ସବୁ ନଷ୍ଟ କରିଦେଲେ । (ବାହାରେ ମଟର ହର୍ଣ୍ଣ ଶୁଣି ସୀତା ଲୁଚିଗଲା । ଶୁଭ ଆସିଲା)

ସବିତା—ଶୁଭ, ଆଣିଲୁ ? ତାକୁ ସାଙ୍ଗରେ ଆଣିଛୁ ?

ଶୁଭ—କାହାକି ବୋଉ ?

ସବିତା—ମୋ ବୋହୂକୁ । ସେଇ ଯେ ଗଲା, ଆଉ ଆସିଲା ନାହିଁ ।

ଶୁଭ—ସେ ଆଉ ଆସିବନି ବୋଉ ! ଜଣେ ବୋହୂ ତ ଘରେ ଅଛି, ଆଉ ଜଣକୁ ଖୋଜୁଚୁ କାହିଁକି ?

ସବିତା—ଘରେ ? କିଏ ସେ ? ସେଇଟା କ ବୋହୂ କି ବା ? ସେଇଟା ସାଇବାଣୀଟା—ଦିନ ଦି'ପହରେ ଗାଧଉଚି, ଅଣ୍ଡା,ସାଗୁଆଡି ଖାଉଚି, ଠାକୁର ଘର ମାଡୁନି, ମତେ ମୁଣ୍ଡିଆ ମାରୁନି; ସେଇଟା ମୋ ବୋହୂ ? ସାଇବାଣୀ ଜନ୍ମଦିନ ଭୋଜି କରୁଚି— ଜନ୍ମଦିନ ! ଏଣେ ଦୁର୍ଗାପୂଜା, ସୁନିଆ ବନ୍ଦ କରି ଦେଲାଣି, ହେଲେ ଜନ୍ମଦିନ ହଉଚି । ସେଇଟା କ ବୋହୂ କି ବା···

ଶୁଭ—ବୋଉ ! ମୁଁ ତ ପାଗଳ ଥିଲି, ଭଲଥିଲି । ମତେ ସୁସ୍ଥ କରିବାକୁ ତୁ ପାଗଳୀ ହେଲୁ କାହିଁକି ? କାହିଁକି ଏତେ ଦୁଃଖ ଚିନ୍ତା ମୋ ମୁଣ୍ଡରେ ଲଦିଦେଲୁ । ପାଗଳ ଥାଇ ବି ତୋର ପାଦତଳେ ମୁଣ୍ଡିଆମାରି, ତୋ ହାତରୁ ପାଦୁକ ଖାଇ, ତୋର ସ୍ନେହଆଦର ପାଇ, ମୋ ଜୀବନଟି ବେଶ୍ ଆନନ୍ଦରେ କଟିଯାଉଥିଲା; ହେଲେ ମୋ ମୁଣ୍ଡରେ ସବୁ ଜଞ୍ଜାଳ ଲଦିଦେଇ ତୁ ସଂସାର ଭୁଲି ରହିଲୁ ?

ସବିତା—ଦିହେଁଯାକ ଆମକୁ ଭୁଲିଗଲେ । ଦେବ ମୁହଁ ବୁଲେଇ-ଦେଇ ଚାଲିଗଲା । ଆଉ···ଆଉ ମଧୁ ସେଇଯେ ଗଲା, କିଛି ଖବର ଅନ୍ତର ଦେଲା ନି ।

ଶୁଭ—ସିଏ କାହିଁକି ଖବର ଦବ ବୋଉ ? ତାକୁ ଜୋର କରି ଭଉଣୀଟାର ଯେତେବେଳେ ବାହାର କରି ଦେଇଚ, ଆମ ସାଙ୍ଗରେ ସେ କାହିଁକି ସମ୍ପର୍କ ରଖିବ ! ଭଲ ହେଇଚି, ଶତ୍ରୁଙ୍କ ଭିତରୁ ଚାଲି ଯାଇ ସେ ଟିକିଏ ହୁଏତ ଶାନ୍ତିରେ ଥିବ ।

ସବିତା—ଶାନ୍ତ ? ମରିଗଲେ ଅବା ଅଶାନ୍ତି ଶେଷ ହୋଇଯାନ୍ତା; ହେଲେ ପୋଡ଼ାପ୍ରାଣଟା କ'ଣ ଯାଉଛି ? ଏତେ ପୂଜାପାଠ ପ୍ରାୟଶ୍ଚିତ କରୁଛି···

ଶୁଭ—ବୋଉ, ବୋଉ ! ମୋ ପାଗଳାମି ଭଲକରିବାକୁ ଯାଇ ତୁ ନିଜେ ଯେତେବେଳେ ପାଗଳୀ ହୋଇଚୁ, ମତେ ଭଲରେ ରହିବାକୁ ଦେ ବୋଉ ! ମତେ ପୁଣି ପାଗଳ କରି ଦେ'ନା !

ସବିତା—ଏଁ ? ଏ-ହେ-ହେ ! ମତେ ଛୁଇଁ ଦେଲୁରେ, ମାରି କରି ଦେଲୁ, ସବୁ ନଷ୍ଟ କରିଦେଲୁ । ଛି-ଛି, କେତେଦିନ ପ୍ରାୟଶ୍ଚିତ୍ତ କଲେ ଶୁଦ୍ଧ ହେବି କେଜାଣି ? ସବୁ ଅଶୁଦ୍ଧ କରିଦେଲୁ, ସବୁ ଅପବିତ୍ର କରିଦେଲୁ । (ପାଣି ସିଞ୍ଚିସିଞ୍ଚି ପ୍ରସ୍ଥାନ । ଶୁଭ ବସିଲା; ପକେଟ୍‌ରୁ ମୋଜା କାଢ଼ିବାକୁ ଗଲା; କିନ୍ତୁ ପାରିଲା ନାହିଁ । ହଠାତ୍ ଭାସିଆସିଲା ଘୁଙ୍ଗୁର ଶବ୍ଦ । ଶୁଭ ହଜିଗଲା . ଅଷ୍ଟତର ଅନ୍ତରାଳରେ; ନାଚି ନାଚି ଆସିଲା ଗୀତା । ଶୁଭ ଗୀତାକୁ ଦେଖୁଛି, କିନ୍ତୁ ତା' ମନରେ ଚନ୍ଦ୍ରିକାର ରୂପ ନାଚିବୁଲୁଛି । ତା' ମନରେ ପ୍ରଶ୍ନ—ଏ କ'ଣ ଗୀତା ? ନା-ନା, ସେଯେ ଚନ୍ଦ୍ରିକା; ନା, ଏ କ'ଣ ସମ୍ଭବ ? ନାଚ ଶେଷରେ 'ମଧୁ ମଧୁ' କହି ଧରିବାକୁ ଦଉଡ଼ ଗଲା)

ଶୁଭ—ମଧୁ ! ମଧୁ ! ଭୁଲିଯାଅନି ମଧୁ !

ଗୀତା—(ବାହାରି) ମଧୁ ? ଆଜିକାଲି ସଂସାରରେ ପ୍ରତ୍ୟେକ ଭ୍ରମକୁ ଚନ୍ଦ୍ରିକାଭଳି ଦେଖାଯାଉଚନ୍ତି, ନା ? ଭିତରେ, ବାହାରେ ଖାଲି ଚନ୍ଦ୍ରିକା ରୂପ ନାଚିବୁଲୁଛି···

ଶୁଭ—ଗୀତା ! ଯାଅ, ଶୀଘ୍ର ସେ ପୋଷାକ ବଦଳେଇ ଦେଇ ଆସ ।

ଗୀତା—କାହିଁକି ? ନାଚବାଲୀ ପୋଷାକ ସହ୍ୟ ହେଉନି ? ଏ ନାଚଗୀତ ଭଲଲାଗୁନି ? ଆଶ୍ଚର୍ଯ୍ୟ ! ଏସବୁ ଭଲଲାଗେ ବୋଲି

ତୁମକୁ ଖୁସି କରିବାକୁ ମୁଁ ମାନ-ସମ୍ମାନକୁ ଜଳାଞ୍ଜଳି ଦେଇ ଆଜ ନାଚବାଲୀ ସାଜଚି ।

ଶୁଭ—(ଚିତ୍କାରକରି) ଚାଲିଯା' ସୀତା ! ଚାଲିଯାଅ ମୋ ଆଗରୁ ।

**For heaven-sake get out of this room.**

ଆଭା—( ପ୍ରବେଶ କଲା ହାତରେ ସ୍କେଟ ମୋଜା ଦୁଇଟି ଧରି ) ବାପା, ବାପା ! ଦେଖିଲେ, ଏ ଦୁଇଟା ସୁବାର ବୋଉ ପଠେଇ ଦେଇଚନ୍ତି । ସୁବା ଆଣି ଦେଇଗଲା । (ଶୁଭ ମୋଜା ଦୁଇଟିଯାକ ମିଳେଇଲା, ହଠାତ୍ ପାଗଳଙ୍କପରି ଚିତ୍କାରକଲା, କାନ୍ଦ-କାନ୍ଦ ଦୁଇଟିଯାକ ଚୁମ୍ବନ ଦେଲା)

ସୀତା—କ'ଣ ହେଲା ? କ'ଣ ହେଲା ତୁମର ? ଶୁଣୁଚ ?

ଆଭା—ବାପା-ବାପା···

ଅ ନ୍ଧା ର

———

## ପଞ୍ଚମ ଦୃଶ୍ୟ

[ ରାତ । ଦୁରାର ଘର; ସେ ଜର୍ଜ୍ଜ ନ୍ ପିନ୍ଧିଥିଲା; ଦ୍ୱାର ବାଡ଼େଇବା ଶବ୍ଦ]

ଦୁରା—କିଏ ?

ଦେବ—(ନେପଥ୍ୟେ) ଦୁର୍ଯ୍ୟୋଧନ ବାବୁ ! ଦୁର୍ଯ୍ୟୋଧନ ବାବୁ !

ଦୁରା—(ଦ୍ୱାର ଖୋଲିବାକୁ ଯାଇ ପୁଣି ପ୍ରବେଶ) କିଏ ଆପଣ ?

ଦେବ—ଆପଣ ମତେ ଚିହ୍ନିପାରିବେନି; ମାତ୍ର ଦଶ ବର୍ଷ ହେଲା ମୁଁ ଆପଣଙ୍କ ଖବର ରଖିଆସିଛି । ଆଜି ବଡ଼ ଜରୁରି ଦରକାରରେ ଆପଣଙ୍କ ସାହାଯ୍ୟ ଲୋଡ଼ି ଆସିଛି । ଦୁରାବାବୁ ଆପଣ ସାହାଯ୍ୟ ନ ଦେଲେ ଗୋଟାଏ ପରିବାର ଆଜି ଛାରଖାର ହୋଇଯିବ ।

ଦୁରା—ମୋର ସାହାଯ୍ୟ ? କି ପ୍ରକାର ସାହାଯ୍ୟ ଆପଣଙ୍କର ଦରକାର, ଶୁଣେ ?

ଦେବ—ଚନ୍ଦ୍ରିକାକୁ ନେବାକୁ ଆସିଛି, ତାକୁ ଶୀଘ୍ର ଡାକିଦେଲେ···

ଦୁରା—ଚନ୍ଦ୍ରିକା ? ଏଠି ତ ଚନ୍ଦ୍ରିକା ବୋଲି କେହି ନାହାନ୍ତି ।

ଦେବ—ଚନ୍ଦ୍ରିକା ନ ହେଲେ, ମଧୁ ତ ଅଛି । ଶୀଘ୍ର ତାକୁ ଡାକି ଦିଅନ୍ତୁ; କଥାବାର୍ତ୍ତା କରିବାକୁ ବେଳ ନାହିଁ ।

ଦୁରା—କିନ୍ତୁ ଆପଣ କିଏ ? ଏ ରାତି ନଅଟାବେଳେ ମଧୁ ପାଖରେ ଆପଣଙ୍କର କି କାମ ଅଛି ?

ଦେବ—ଶୁଭ ପାଗଳ ହୋଇଯାଇଛି । ମଧୁର ସ୍ୱାମୀ ଶୁଭେନ୍ଦ୍ର ମିଶ୍ରର ପୁଣି ମୁଣ୍ଡ ଖରାପ ହୋଇଯାଇଛି ।

ଦୁରା—କ'ଣ କହିଲ ? ଶୁଭବାବୁ···

ଦେବ—ହଁ-ହଁ, ଦଶବର୍ଷ ଭଲ ରହିବା ପରେ ପୁଣି ସେ ପୁରୁଣା ରୋଗ ତା'ର ଦେଖାଦେଇଚି । ମଧୁ ନ ଗଲେ ତା'ର ଚିକିତ୍ସା କରିବ କିଏ ?

ମଧୁ—(ବ୍ୟସ୍ତ ଭାବରେ ପ୍ରବେଶି) କିଏ ? କିଏ ଆସିଚନ୍ତି ? କ'ଣ ହୋଇଚି ? ଓ ଦେବ ଦା, ଆପଣ ? (ମୁଣ୍ଡିଆ ମାରିଲି)

ଦେବ—ହେଲା ମା' ହେଲା; ମୁଁ ତତେ ନେବାକୁ ଆସିଚି ମା' ! ଆଜ ସନ୍ଧ୍ୟାବେଳଠୁ ଶୁଭ୍ର ମୃଗୀ ପାଗଳାମି ଆରମ୍ଭ କରିଚି ବୋଲି ଖବର ପାଇ ମୁଁ ତୋ ପାଖକୁ ଧାଇଁଆସିଚି ।

ମଧୁ—ଆଜ ସନ୍ଧ୍ୟାବେଳଠୁ ? ତେବେ କ'ଣ··

ଦେବ—କ'ଣ ହୋଇଚି ତୁ କ'ଣ କିଛି ଜାଣୁ ?

ମଧୁ—ଦାଦା ସେ ସେଦିନ, ସୁବ୍ରତକୁ ଖୋଜିବାକୁ ଆସିଥିଲେ । ସେଦିନ ଭୁଲ୍‌ରେ ସେ ଦଶବର୍ଷ ତଳର ସେଇ ସ୍ୱେଟର ମୋଜାଟିଏ ଭୁଲିଯାଇଥିଲେ ଏଘରେ । ଠିକ୍ ସେମିତି ଆଉ ଗୋଟିଏ ମୋଜା ତିଆରି କରି ମୁଁ ଆଜ ସନ୍ଧ୍ୟାବେଳେ ପଠାଇ ଦେଇଥିଲି ଆଉ ହାତରେ ।

ଦେବ—କାହିଁକି ଏ ଭୁଲ୍ କଲୁ ? ତା'ର ସେଇ ଅପୂର୍ଣ୍ଣ ମୋଜାକୁ ପୂର୍ଣ୍ଣ କରି ତୁ ତା'ର ସେଇ ଅତୀତର ସ୍ମୃତିକୁ କାହିଁକି ସଜୀବ କରିଦେଲୁ ମଧୁ ? ହୁଏତ ସେଇ ଧକ୍କାରେ ଅବ୍ୟ-ବସ୍ଥିତ ହୋଇ ଉଠିଚି । ତୁ ଚାଲ ମା' ! ତୁ ନଗଲେ ଏ ଅସମୟରେ ତା'ର ସେବା କରିବ କିଏ ?

ଦୁର୍ଗା—ନା, ମଧୁ ଯାଇ ପାରିବନି ।

ମଧୁ—ଭାଇ !

ଦେବ—ଶୁଭ୍ରର ଏ ଅବସ୍ଥାରେ ମଧୁ ଯିବନି ?

ଦୁଗ—କାହିଁକି ଯିବ ? ତାର କି ସ୍ୱାର୍ଥ ଅଛି ? ତା'ର କି ଆକର୍ଷଣ ଅଛି ସେ ଘରେ ?

ଦେବ—ଶୁଭ ତା'ର ସ୍ୱାମୀ; ସେ ଘରେ ତା'ର ଇହକାଳ ପରକାଳର ତୀର୍ଥକ୍ଷେତ୍ର ।

ଦୁଗ—ସ୍ୱାମୀ ? ଚୋଟିଏ ପଢ଼ତା'ର ସ୍ୱାମୀ ଆସିଲା କେଉଁଠୁ ?

ମଧୁ—ଭାଇ !

ଦୁଗ—ଏ କଥା ମୋର ନୁହେଁ ମଧୁ ! ସେ୍ୱ ହେଉଛି ଏଇ ଦରଦୀ ଭଦ୍ରଲୋକଙ୍କର କଥା—(ଦେବକୁ) ଆପଣ ସେଇ ଦେବବାବୁ ନା, ଯିଏ ନିର୍ମମ ଭାବରେ ମଧୁକୁ ଧକ୍କାଦେଇ ସେଘରୁ ତଡ଼ିଦେଇଥିଲେ ? ଆପଣ ସେଇ ଭଦ୍ର ପରିବାରର ନିମକ୍ ମରା ଗୁମାସ୍ତା ନା, ଯିଏ କି ବଂଶର ଆଭିଜାତ୍ୟ ଅକ୍ଷୁର୍ଣ୍ଣ ରଖିବାପାଇଁ ଗୋଟାଏ ବାଳିକାର ସ୍ୱପ୍ନକୁ ଭାଙ୍ଗି ଚୂନା କରିଦେଇଥିଲେ ? ଆପଣ ନା ସେଇ ଦେବ ବାବୁ, ଯିଏ କି ବିବାହିତା ଯୁବତୀର ସ୍ନେହଭରା ହୃଦୟକୁ ବଜାର ସଉଦା ବୋଲି ଭାବି ମୂଲ ସଚେଇ କରିଥିଲେ ?

ଦେବ—ହଁ-ହଁ, ମୁଁ ସେଇ ନିର୍ମମ ନିଷ୍ଠୁର ରାକ୍ଷସ; ମୁଁ ସେଇ ଦେବ, ଯିଏ କି ଗୋଟାଏ ପରିବାର ପ୍ରତି ତା'ର କର୍ତ୍ତବ୍ୟ କରିବାପାଇଁ ଗୋଟାଏ ସରଳ ଯୁବତୀର ଜୀବନକୁ ଧ୍ୱଂସ କରିଦେଇଛି । ଦୁଗବାବୁ ! ଆପଣ ବୁଝିବେନି ମୋର ମର୍ମଦାହ । ଆପଣଙ୍କର ଦେବଛି ନିକଟରେ ମୁଁ ଆଜି ପରାସ୍ତ, ଦୁର୍ବଳ; ଆପଣ ଯାହା ଭର୍ତ୍ସନା କରିବେ କରନ୍ତୁ, କିନ୍ତୁ ମଧୁକୁ ଯିବାକୁ ଅନୁମତି ଦିଅନ୍ତୁ । ତା' ନ ହେଲେ ସେ ସେ ପରିବାର ଧ୍ୱଂସ ହୋଇଯିବ ।

ମଧୁ—ଦେବ ଦା ! ଦଶବର୍ଷ ତଳେ ସେ ଘରକୁ ଆପଣ ମତେ ଟୋଲା-କନିଆଁ କରି ନେଇଯାଇଥିଲେ; ଆଜ ପୁଣି ଦଶବର୍ଷପରେ ମତେ କ'ଣ ସେହିକା ଭାବରେ ଡାକିବାକୁ ଆସିଚନ୍ତି ?

ଦେବ—ମଧୁ, ତୁ ହୁଏତ ଜାଣିନୁ । ତୁଳିକୁ ପଥର କରି ତତେ ଯୋଉଦିନ ସେ ଘରୁ ମୁଁ ଧକ୍କା ଦେଇ ତ...ଦେଇଥିଲି, ସେଇଦିନଠୁ ମୁଁ ନିଜେ ଘର ଛାଡ଼ି ମୁଁ ନିଜର ସ୍ୱାଧୀନ କର୍ମ-ପନ୍ଥା ଠିକ୍‌କରି ନେଇଚି । ମାତ୍ର ତୁମ ଦୁହିଁଙ୍କ ଖବର ମୁଁ ବରାବର ରଖିଆସିଚି । ମୁଁ ଦେଖିଚି, ତୁ ଏଠି ଆସି ଆଶ୍ରୟ ନେଇଚୁ । ଗୋଟାଏ ଖାମ୍‌ଖିଆଲି ଲୋକ ଭିତରେ ଫୁଟିଉଠିଚି ଦେବତ୍ୱ । ମଟର ମେକାନିକ୍ ହୋଇଚି ମଟର ବ୍ୟବସାୟୀ··· ଗରିବ ହୋଇଚି ମଧ୍ୟବିତ୍ତ । ସବୁ ମୁଁ ଦୂରରୁ ଲକ୍ଷ୍ୟକରିଚି ହରି ବାବୁ !

ହରି—ବାସ୍···ବାସ୍ ! ଏ ଅଭିନୟ, ଏ କମ୍ଭୀର-କାନ୍ଦଣା ଖୁବ୍ ଦେଖିଛି । ଏଥର ବିଦାୟ ନିଅନ୍ତୁ ଆପଣ । ଆପଣ କ'ଣ ଭାବିଚନ୍ତି ମତେ ଖୋସାମତି କରି ଦି'ଗୁଟି ପଦ କଥା କହିଦେଇ ଆଖିରୁ ଦି'ଠୋପା ଲୁହ ଝରେଇ ଦେଲେ ମୁଁ ଆପଣଙ୍କ କଥାରେ ଭୁଲିଯିବି ? ଆପଣ ଠକିଯାଇଚନ୍ତି ଗୁମାସ୍ତା ବାବୁ ! ହରି ଏତେ କଞ୍ଚା ଖେଳାଳି ନୁହେଁ ।

ଦେବ—ତା' ମୁଁ ଜାଣେ ହରିବାବୁ ! ତେବେ ମୋ କଥାରେ ଛଳନା ନାହିଁ । ମତେ ଭୁଲ୍ ବୁଝନ୍ତୁନି । ଏଇ ଅଧଘଣ୍ଟାକ ତଳେ ମୁଁ ମୋର ଦୋକାନରେ ଖବର ପାଇଲି ତୁଳିର ପୁଣି ମୁଣ୍ଡ ଖରାପ ହୋଇଯାଇଚି । ମୁଁ ଆଉ ଧୈର୍ଯ୍ୟଧରି ରହିପାରିଲି

ନାହିଁ । ମୁଁ ଜାଣେ, ଶୁଭଙ୍କୁ ଯଦି କେହି ସାହାଯ୍ୟ କରିପାରେ, ସେ ହେଉଛି ମଧୂ । ସେଥିଲାଗି···

ଦୁର୍ଗା—ସେଥିଲାଗି ଦଶବର୍ଷ ପରେ ଆପଣଙ୍କର ହଠାତ୍ ଦେଖା ମିଳିଲା । ଆଜି ଦରକାର ପଡ଼ିଛି···ଆଜି ପ୍ରୟୋଜନ ଅଛି, ବାଃ,—ସ୍ୱାର୍ଥପରତାର ଆଉ କି ନମୁନା ଦିଅନ୍ତେ ଆପଣ ?

ଦେବ—ମଧୂ ! ତୁ କ'ଣ ଶୁଭର ଏ ଅବସ୍ଥାରେ ଯିବୁନି ?

ଦୁର୍ଗା—ନା···ନା···ମଧୂ ଯିବନି, ଶୁଭ କିଏ ? ତା' ସହିତ ମଧୁର କି ସମ୍ପର୍କ ?

ମଧୂ—ଭାଇ ! ମତେ ଯିବାକୁ ହବ । ତାଙ୍କର ଏ ଅବସ୍ଥାରେ···

ଦୁର୍ଗା—ମଧୂ ! ଚୁପ୍ ହୋଇ ଭିତରକୁ ଚାଲିଯା କହୁଛି ? ଯୋଉ ସ୍ୱାମୀ ଦଶ ବର୍ଷ ଭିତରେ ଥରେ ହେଲେ ଖୋଜ୍‌ଖବର ନବାର ଚେଷ୍ଟା କରିନି, ତା'ପ୍ରତି ତୋର ପୁଣି ସ୍ନେହ ?

ମଧୂ—ସେ ମୋତେ ଖୋଜନ୍ତି ଭାଇ ! ମନେ ମନେ ପ୍ରତିମୂହୂର୍ତ୍ତ ମୋ ଲାଗି ଭାବନ୍ତି । ଯୋଉଦିନ ସେ ପ୍ରେଷ୍ଟ ମୋଟାଟି ମୁଁ ଦେଖିଲି···

ଦୁର୍ଗା—ମଧୂ ! ଚୁପ୍ କର କହୁଛି ।

ମଧୂ—ନା ଭାଇ ! ଆଜି ମତେ ତୁମେ ବାଧାଦେଇ ପାରିବନି; ମତେ ଯିବାକୁ ହିଁ ହବ । ସେ ଯେ ମୋର ସ୍ୱାମୀ !

ଦୁର୍ଗା—ସେ ତୋର ସ୍ୱାମୀ; ଆଉ ମୁଁ ? ମୁଁ ତୋର କେହି ନୁହେଁ, ନା ? ଦଶବର୍ଷ ଧରି ମୋର ଯୋଉ ସାହାଯ୍ୟ ସହାନୁଭୂତି, ସ୍ନେହ, ଭଲପାଇବା···ତା'ର କିଛି ମୂଲ୍ୟ ନାହିଁ, ନା ? ତା'ର ପ୍ରତିଦାନରେ ମୁଁ ତୋଠୁ କ'ଣ କିଛି ଆଶାକରି ପାରେନା ?

ମଧୁ—ଭାଇ ! ତୁମର ସ୍ନେହ, ସାହାଯ୍ୟ ପ୍ରତିଦାନରେ କ'ଣ ମୋର ସ୍ୱାମୀଙ୍କୁ ଛାଡ଼ିଦେଇ ନବାକୁ ଚାହଁ ? ତାଙ୍କ ସ୍ଥାନ ତୁମ୍ଭେ ପୂରଣ କରିବାକୁ ଚାହଁ ?

ଦୁର୍—ମଧୁ ! ଏ କଥା ତୁ କହି ପାରିଲୁ ମଧୁ ? ତୋର ଦୁର୍ଗାଭାଇକୁ ଏତେ ହୀନ, ଏତେ ନୀଚ କରିପାରିଲୁ ?

ମଧୁ—ଭାଇ !

ଦୁର୍—ବେଶ୍, ତୁ ଯା ମଧୁ ! ତୁ ଯା; ସୁବା ଯାଉ, ସମସ୍ତେ ଚାଲିଯାଅ । କେହି ଦରକାର ନାହିଁ । କାହାରି ଦରକାର ନାହିଁ ମୋର ।

ମଧୁ—ଭାଇ !

ଦୁର୍—ଭାଇ ? ମଧୁର ଭାଇ ଏ ଟିକକ ଆଗରୁ ମରିଗଲା; ତୁ ଦେଖି ପାରିଲୁନି ? ମଧୁର ଭାଇ ମରିଛି । ଦୁର୍ଗାର ଭଉଣୀ ମରିଛି । କାଲି ସକାଳୁ ଯିମିତି ତୋର ଛାଇ ମୁଁ ଦେଖିବାକୁ ନ ପାଏ । ଆଉ ତୁ ଯଦି ନିଜ ଇଚ୍ଛାରେ ନ ଯାଉ, ମୁଁ ତତେ ଜୋର୍‌କରି ଧକ୍‌କାଦେଇ ବାହାର କରିଦେବି । ମନେଥାଏ ଯେମିତି ।

(ପ୍ରସ୍ଥାନ)

ମଧୁ—ଭାଇ !

ଦେବ—ପଛରୁ ଡାକନା ମଧୁ ! ପଛରୁ ଡାକ ନା; ତୋର ଅମଙ୍ଗଳ ହେବ ଯେ ! ଚାଲ୍, ସେଣେ ଅବସ୍ଥା କ'ଣ ହେଲାଣି କେଜାଣି; ତତେ ନେଇ ପହଞ୍ଚାଇ ଦେଲେ ମୁଁ ନିଶ୍ଚିନ୍ତ ହେବି ।

ମଧୁ—କୁଆଡ଼େ ଯିବି ଦେବ ଦା ? ତୁମେ ଫେରିଯାଅ, ଫେରିଯାଅ ତୁମେ । (ପ୍ରସ୍ଥାନ)

—ଅ ନ୍ଧା ର—

## କ୍ରୋଡ଼ ଦୃଶ୍ୟ

[ଅନ୍ଧାର ରାତି । ଗୋଟିଏ ଡିଜେଲ୍ ଟ୍ରକ୍ ଛିଡ଼ା ହେଇଚି । ପ୍ରବେଶ କରୁଚି ଦୁର୍ଗା । ଟ୍ରକ ଆଗରେ ଛିଡ଼ାହୋଇ ସିଗାରେଟ୍ ଲଗେଇଛି । ତା'ର କ୍ଲିନର୍ ଆସି ଛିଡ଼ା ହେଇଚି ଆଗରେ ।]

ଦୁର୍ଗା—କିରେ ହରିଆ ! ମାଲ୍ ଲୋଡ଼ିଙ୍ଗ୍ କେତେବେଳେ ସରିଲା ?

ହରି—ଏଇ ତ ଅଧଘଣ୍ଟେ ହବ ।

ଦୁର୍ଗା—ମେଘ ଉଠେଇଲାଣି । ବର୍ଷା ହବ କି କ'ଣ ?

ହରି—ହଁ ଭାଇ ! ଚାଲ ଜଲ୍‌ଦି ପଳେଇବା ।

ଦୁର୍ଗା—ଡିଜେଲ୍, ମୋବିଲ୍, ପାଣି, ପମ୍ପ ସବୁ ଠିକ୍ ଅଛି ?

ହରି—ହଁ, ସେ ସବୁ ଠିକ୍ ଅଛି । ମାଲ୍ ଉପରେ କେରପାଲ୍ ବି ଭିଡ଼ି ଦେଇଚି ।

ଦୁର୍ଗା—ହଉ ହଉ...(ଦୁହେଁ ଦୁଇପାଖରେ ଦୁଆର ଖୋଲି ଟ୍ରକରେ ଉଠି ବସିଲେ, ଦୁଆର ବନ୍ଦକଲେ । ଡ୍ୟାସ୍ ବୋର୍ଡ଼ ଲାଇଟରେ ଅସ୍ପଷ୍ଟ ତ୍ରୁଷ୍ଟା ତାଙ୍କର ଦେଖା ଯାଉଥାଏ । ଦୁର୍ଗା ଗାଡ଼ି ଷ୍ଟାର୍ଟ କଲା । ହେଡ଼୍‌ଲାଇଟ୍ ଦୁଇଟି ଜଳି ଉଠିଲା । ଉଜ୍ଜ୍ୱଳ ଭାବରେ ଗାଡ଼ି ମାଡ଼ିଆସିଲା ଦର୍ଶକଙ୍କ ଉପରକୁ ।

× × × ×

ଅଙ୍କାବଙ୍କା ରାସ୍ତାଦେଇ ଟ୍ରକ ଆଗେଇ ଯାଉଚି, ଅନ୍ଧାର ରାତିରେ ଦୁଇଟି ଆଲୋକର ରେଖା ଟାଣି । ବିପରୀତ ଦିଗରୁ ଶଗଡ଼ ଗୋଟିଏ ଆସୁଚି । ଶଗଡ଼ ତଳେ ଓହଳ ଲଣ୍ଠନ ଜଳୁଚି ।

ବଳଦ ବେକରେ ଘଣ୍ଟି ଝମର ଝମର ଶୁଭୁଚ । ଟ୍ରକ୍ ହର୍ଣ୍ଣ୍ ବାଜଲା । ବଳଦ ଟିକିଏ ହୁରୁଡ଼ଯାଇ ଏପାଖ ସେପାଖ ହେଲେ । ଦୁହେଁ ନକଟବର୍ତ୍ତୀ ହେଲେଣି ପୁଣି ହର୍ଣ୍ଣ ବାଜଲା । ଶଗଡ଼ଦଣ୍ଡା ବୁଲେଇ ଦେଲା । ଆତ୍ମରକ୍ଷା କରିବାକୁ ଯାଇ ଟ୍ରକ ନଜର ଗତି ସମ୍ଭାଳ ପାରିଲା ନାହିଁ···ଗଡ଼ିଗଲା ରାସ୍ତାକଡ଼କୁ ।

···ଅ ନ୍ଧା ର···

---

## —ଷଷ୍ଠ ଦୃଶ୍ୟ—

[ରାତ । ଶେଠ୍‌ଜୀଙ୍କ ଅଳନ୍ଦ । ଶେଠ୍ ଗଣପତ୍ ରାମ ଓ ମଧୁ କଥାବାର୍ତ୍ତା ହେଉଥିଲେ । ]

ଶେଠ—ଆରେ ! ଚନ୍ଦ୍ରକା ତୁ ଆସିଚୁ ମୋର ମକାନ୍‌କୁ ! ଇତା ରାତରେ ତୁ ଅସିଚୁ ? ଅହୋ ଭାଗ୍ୟ, ଆ···ଆ···ଭିତରକୁ ଆ···

ମଧୁ—ଶେଠ୍‌ଜୀ ! ଆପଣଙ୍କଠୁ ସାହାଯ୍ୟ ପାଇବ ବୋଲି ଆଶାକରି ମୁଁ ଧାଇଁଆସିଚି । ଆପଣ ମତେ ନିରାଶ କରିବେନି ତ ?

ଶେଠ—ନିରାଶ ? ହେଁ ହେଁ ହେଁ ହେଁ; ଆରେ ଜାଲିମା' ! ଆରେ ପଥ୍ଥର ଦିଲ୍ ମାଇକିଣା ! ଦଣଯାଲ ଧରି ତୁଇ ସିନା ହାମକୁ ନିରାଶ୍ କରିଚୁ; ମଗର ତୋ ଲାଗି ତ ହାମର କଲିଜା କବାବ୍ ରହିଚି । ତୁମକୁ କୋଣ ହାମ୍ ନିରାଶ କରି ପାରିବ ? ନେଇଁ

ନେଇଁ, ଝିଅଟା ହାଏ କୋଉ ? ଆ’ ଭିତରକୁ ଆ—ନା ଚନ୍ଦ୍ରିକା !
ମେସିନ୍ ଚୁଲ୍ ଚୁଲ୍… !

ମଧୁ—ଶେଠ୍‌ଜୀ ! ମୋର ବହୁତ ଟଙ୍କା ଦରକାର । ପ୍ରାୟ ଦୁଇ-ହଜାର, ଆଜି…ବର୍ତ୍ତମାନ ।

ଶେଠ୍‌ଜୀ—ହେ; ଟଙ୍କା ଦୁଇ-ହଜାର ?

ମଧୁ—ହଁ ଶେଠ୍‌ଜୀ, ଏଇ ଯାଉଁ ଯାଉଁ ମତେ ଟଙ୍କା ଦବାକୁ ହବ । ସେତିକି ଜରୁରୀ ଦରକାର ବୋଲି ଏତେ ରାତିରେ ମୁଁ ଆପଣଙ୍କ ଦୁଆରେ ହାତ ପାତିଚି ଶେଠ୍‌ଜୀ ! ଦେବେ କି ନାହିଁ ମୁଁ ଖାଲି ଜାଣିବାକୁ ଚାହେଁ ।

ଶେଠ୍‌ଜୀ—ଅରେ ଯେ ହେଃ କୋଣ କହୁଚୁ ଚନ୍ଦ୍ରିକା ? ଏ ମାମୁଲି ଦୋ ହଜାର ଟକ ଲିଏ ଗଣପତ୍ ରାମ୍ ଇନ୍‌କାର କରିଦବ ? ନେଇଁ…ନେଇଁ…ନେଇଁ; ଆରେ ଆରେ ତୋ ଲଗି ତ’ମୁଇଁ ତିଜୁରୀ ସାଫ କରିଦେବ—ହେଃ ହେଃ ହେଃ । ମୁଇ ତୋର କଥା ରଖିଲେ, ତୁଇ ମୋର କଥା ରଖିବୁ ନା ?

ମଧୁ—ଆଜି ନାହିଁ କରିବାକୁ ମୋର ଶକ୍ତି ନାହିଁ । ଶେଠ୍‌ଜୀ, ଆପଣ ଯାହା କହିବେ ମୁଁ କରିବ, ଯାହା ମାଗିବେ ମୁଁ ଦେବ । ମାତ୍ର ଏଇ ମୁହୂର୍ତ୍ତରେ ମତେ ଦୁଇ-ହଜାର ଟଙ୍କା ଦବାକୁ ହବ । ପ୍ରଥମେ ମୋ କାମ ମୁଁ ଶେଷ କରି ଆସିଲେ…ଆପଣଙ୍କ କାମ ମୁଁ ପୂର୍ଣ୍ଣ କରିବ ।

ଶେଠ୍—ପେଖାବାତ୍, ପକ୍‌କି ହୁଇ ବାତ୍ ?

ମଧୁ—ହଁ ଶେଠ୍‌ଜୀ ।

ଶେଠ୍—ତୋ ହାତ୍‌ମେ ରଖ୍ ହାତ୍ (ମଧୁ ଉଠିବାରେ ତଥା ନିଜେ ରକ୍ଷା)
ଆଃ…ଚନ୍ଦ୍ରିକା, କ୍ୟା ଲାଜୁବ୍ ହାତ ହେ…

ମଧୁ—ହାତ ଛାଡ଼ ଦଅନ୍ତୁ ଶେଠ୍‌ଜୀ ! ଛାଡ଼ ଦଅନ୍ତୁ କହୁଛ ।

ଶେଠଜୀ—ଆରେ କ୍ୟୁ ଏ ନଖରା କରୁଛ ? ଆ-ନା, ଭିତରକୁ ଆ···ନା ?

ମଧୁ—ମତେ ଛାଡ଼ ଦଅନ୍ତୁ ଶେଠ୍‌ଜୀ ! ମୋର ଟଙ୍କା ଦରକାର ନାହିଁ ।

ଶେଠ୍‌ଜୀ—ଚନ୍ଦ୍ରିକା ! ମୋର ବୁଲ୍ ବୁଲ୍···ତୋ ଲାଗି ମୁଁ ପାଗଲ ହେଇଯିବ···ଦଶ ଶାଲ୍‌ଧର ତୋର ତଲାସ୍ ମୁଇଁ କରି ଆସିଛି । ତୋର ନାଚ ଗାଣା···ତୋର ଏ କାଟକ ବରାବର ନାଜୁକ୍ ବଦନ ! ଆ···ଆ'ନା···

ବେଲୁନ୍—( ହଠାତ୍ ପ୍ରବେଶ କରିଚି । ହାତରେ ଲୁହା ଖଡ଼କା ) ଏ ଶେଠ୍ ! ଯଦି ଜୀବନକୁ ଡର ଅଛି, ମୋ ଭଉଣୀକୁ ଛାଡ଼ିଦେ କହୁଚି । ନ ହେଲେ ଏ ଲୁହା ଖଡକାରେ ତାକୁ ଦ'ଫାଳ କରିଦେବ ।

ଶେଠ୍‌ଜୀ—(ହାତ ଛାଡ଼ିଦେଇ) ଆରେ ତୁ କୌନ୍ ହୈ ବେ ?

ବେଲୁନ୍—ତୁମେ କ'ଣ ଭାବିଚ ଗରିବଙ୍କର ମାନ ସମ୍ମାନ ନାହିଁ ? ଟଙ୍କା ଜୋରରେ ତୁମେ ମନଇଛା ଅତ୍ୟାଚାର, ବ୍ୟଭିଚାର କରିଯିବ ?

ମଧୁ—ବେଲୁନ୍ ଭାଇ ! ମତେ ଏଠୁ ନେଇ ଚାଲ । ଅସୁବିଧାରେ ପଡ଼ି ବଡ଼ ସରଳ ମନରେ ଶେଠ୍‌ଜୀଙ୍କ ସାହାଯ୍ୟ ମାଗି ଆସିଥିଲି···

ବେଲୁନ୍—କାହିଁକି ? ମୁଁ କ'ଣ ମରିଯାଇଥିଲି ? ତୋର ସାହାଯ୍ୟ ଲାଗି ତୁ କ'ଣ ମୋ ପାଖକୁ ଯାଇପାରି ନଥାନ୍ତୁ ? ଏ ରାକ୍ଷସ ପାଖକୁ ଆସିବାର କ'ଣ ଦରକାର ଥିଲା ?

ଶେଠ୍‌ଜୀ—ହାଁ···ହାଁ···ମୁଇଁତ ନୂଇହଜାର ଦବାକୁ ରାଜିହେଇ ଯାଇଥିଲି । ନା-କ'ଣ ଚନ୍ଦ୍ରିକା ? ତୁଇ କହନା···?

ବେଲୁନ୍—ହଁ...ହଁ...ଆପଣ ଘର ଦାମ୍, ଦୟାକ୍ରୁ, ମୁଁ ଜାଣେ । ନୂଆପଇସାଟିଏ ଦେଲେ, ପାଞ୍ଚ ପଇସା କେମିତି ଫେରି ପାଇବେ, ସେ ବୁଦ୍ଧି ତୁମର ବେଶ୍ ଅଛି । ଟଙ୍କାଦେଇ ମୋ ଭଉଣୀର୍ ଇଜ୍ଜତ ଲୁଟି ନେବାକୁ ତୁମେ ଚେଷ୍ଟା କରୁଥିଲ ?

ମଧୁ—ବେଲୁନ୍ ଭାଇ !

ବେଲୁନ୍—ଭାଇବୋଲି ଯଦି ଡାକୁଚୁ, ତେବେ ତୋର ବିପଦ-ବେଳେ ମୋ ପାଖକୁ ଯାଇପାରିଲୁ ନି ? ମୁଁ ଗରିବ ହୋଇ-ପାରେ, ହୋଟେଲବାଲା ହୋଇପାରେ; ହେଲେ ଟଙ୍କା ହଜାର ଦି'ହଜାର କ'ଣ ମୁଁ ଯୋଗାଡ଼ କରିପାରି ନଥାନ୍ତି ? ଟଙ୍କା କେଇଟା ଲାଗି ତୁ ନିଜର ମାନ୍ ମହତ ବିକ୍ରି କରିଦବାକୁ ଆସିଚୁ ?

ମଧୁ—ଟଙ୍କା ଲାଗି ନୁହେଁ ବେଲୁନ୍ ଭାଇ ! ମୋର ଦୁଲାଭାଇ ଲାଗି ।

ବେଲୁନ୍—ସବୁକଥା ମୁଁ ଶୁଣିଚି । ଟ୍ରକ ଧକ୍କାରେ ଦୁଲାଭାଇ ମଲାଗଲା ହୋଇ ପଡ଼ିଚି । ଟଙ୍କା ନହେଲେ ତା'ର ଜୀବନ ହୁଏତ ବଞ୍ଚିଇ ହବନି । ତୁ ଚାଲ୍ ମୋ ସାଙ୍ଗରେ; ମୁଁ ତତେ ଟଙ୍କା ଦେବି । (ପ୍ରସ୍ଥାନୋଦ୍ୟତ) (ପ୍ରବେଶ କଲା ଯୋଗେଶ)

ଯୋଗେଶ—ନୂଆବୋଉ...ନୂଆବୋଉ...ଏଇ ତ, ଏଇଠି ଅଛନ୍ତି ସମସ୍ତେ; ମୁଁ ତା'ହେଲେ ଠିକ୍ ଖବର ପାଇଥିଲି ।

ଶେଠଜୀ—ଆରେ ଏ କୈସା ଝମେଲା—? ଚନ୍ଦ୍ରକାନ୍ତ କେତେ ଜାନ୍ ପେଚିଛନ୍ ଅଛନ୍ତି ସବ୍ ମୋର ମକାନ୍‌ଟାକୁ ଦଙ୍ଗଲ କରିବ ନା କ'ଣ ?

ମଧୁ—ଆପଣ ଏଠି କାହିଁକି ? (ଯୋଗେଶକୁ)

ଯୋଗେଶ—ତୁମକୁ ଡାକିବାକୁ ଆସିଛି ନୂଆବୋଉ ! ଶୁଭ ଭାଇଙ୍କ ଦେହ ଖୁବ୍ ଖରାପ । ତୁମେ ଚାଲ ନୂଆବୋଉ ! ତୁମେ ନଗଲେ ସେ ସେ ପରିବାର ଉଚ୍ଛନ୍ନ ହୋଇଯିବ ।

ମଧୁ—ମୋର ସ୍ୱାମୀଙ୍କର ସ୍ତ୍ରୀ ପରିବାର ଅଛି, ଆପଣମାନେ ଅଛନ୍ତି; ହେଲେ ମୋ ଦୁଃଖୀ ଭାଇର କେହି ନାହାନ୍ତି ଯୋଗେଶ ବାବୁ ! ସଂସାରରେ ଆଜ ତା'ର କେହି ନାହାନ୍ତି—

ଯୋଗେଶ—ତୁମର ଭାଇଙ୍କ ଲାଗି ତୁମେ ସ୍ୱାମୀଙ୍କୁ ପରିତ୍ୟାଗ କରିବ ନୂଆବୋଉ ?

ମଧୁ—ଦଶବର୍ଷ ତଳେ ସ୍ୱାମୀ ମତେ ପରିତ୍ୟାଗ କରିଥିଲେ । ଏଇ ଭାଇଟି ମତେ ବାହୁଛୁଆ ତଳେ ଆଶ୍ରୟ ଦେଇଥିଲା । ଆଜି ସେଇ ଭାଇକୁ ମୁଁ ସାହାଯ୍ୟ ନ କଲେ ସେ ମରିଯିବ ଯୋଗେଶ ବାବୁ ! ମତେ ଆଜ ଆଶ୍ରୟ ଦେବ କିଏ ?

ଯୋଗେଶ—ତୁମେ ତା ହେଲେ ଯିବନି ନୂଆବୋଉ ?

ମଧୁ—ନା···ଆସ ଭାଇ ! (ମଧୁ ଚାଲିଗଲା ପରେ ପରେ ଯୋଗେଶ ଓ, ବେଲୁନ୍ ପ୍ରସ୍ଥାନ)

ଶେଠଜୀ—ଯାଅ···ଯାଅ···ଭାଗ୍ ଇହାଁସେ । ସବ୍ ଗଣ୍ଡଗୋଳ କରୁଦିଆ ।

···ଅନ୍ଧାର···

———

# ଶେଷ ଦୃଶ୍ୟ

[ ଦୁର୍ଯୋଧନର ଘର । ଧଳା ବିଛଣା ଉପରେ ଦୁର୍ବା ଅର୍ଦ୍ଧଶାୟିତ; ତା'ର ମୁଣ୍ଡରେ ହାତରେ ବ୍ୟାଣ୍ଡେଜ୍ ]

ଦୁର୍ବା—ନା-ନା, ରାଗରେ ସେଦିନ କ'ଣ କହି ଦେଇଥିଲି ବୋଲି ତାକୁଇ ବେଦର ଗାର କରି ଧରିନେଲୁ ? ମୋ ଲାଗି ନିଜର ସ୍ୱାମୀକୁ ଫେରି ଚାହିଁଲୁନି ?

ମଧୁ—ବାମନ ହୋଇ ଚନ୍ଦ୍ରକୁ ଧରିବାଲାଗି ହାତ ବଢ଼େଇଥିଲି ଭାଇ, ଲୁହ ନିକାନ୍ଦ ରକତ କାନ୍ଦିଛି । ସେ ଭୁଲ୍ ଆଉଥରେ କାହିଁକି କରିବି ଭାଇ ?

ଦୁର୍ବା—ତୁ ବୁଝିନୁ କାହିଁକି ମଧୁ ! ସେ ଘର ତୋର । ସେମାନେ ଆଜି ତୋ'ର ସାହାଯ୍ୟ ଚାହାନ୍ତି । ଏ ଅସମୟରେ ଉଦାସହୋଇ ବସିରହିବା କ'ଣ ତୋ ପକ୍ଷରେ ସୁନ୍ଦର ହେଉଛି ? ଭଗବାନ୍ ନକରନ୍ତୁ, ଶୁଭ ବାବୁଙ୍କର ଯଦି କିଛି ଭଲମନ୍ଦ ହୋଇଯାଏ···

ମଧୁ—ଭାଇ !!

ଦୁର୍ବା—ନା-ନା, ଆଜି ମତେ ଯିବାକୁହେବ ମଧୁ ! ସେଦିନ ତତେ ବାଧାଦେଇ ଯୋଉ ଭୁଲ୍ କରିଛି ତା'ର ସଂଶୋଧନଲାଗି ମତେ ଆଜି ବିଛଣା ଛାଡ଼ିବାକୁ ହବ ।

( ଉଠିବାକୁ ଚେଷ୍ଟାକଲା )

ମଧୁ—(ବାଧାଦେଇ) ନା-ନା, ତୁମେ ଉଠନି ଭାଇ···ମୋ ରାଣ ଅଛି, ତୁମେ ଏ ଅବସ୍ଥାରେ ଚଲାବୁଲା କରନି ।

ଦୁର୍ବା—ଯୁଝିଯା ମଧୁ ! ମତେ ବାଧା ଦେ'ନା କହୁଛି । ଆଜି ମୁଁ ଯଦି ଚୁପ୍‌ହୋଇ ବସିଯାଏ ତେବେ ତୋ'ର ସଂସାର

ସବୁଦିନଲଗି ସ୍ୱର୍ଗଯିବ ମଧୁ ! ତା' ହେଲେ ମୁଁ ସେ ନିଜକୁ କ୍ଷମା ଦେଇପାରିବିନି ।

ଯୋଗେଶ—(ପ୍ରବେଶି) ନା-ନା-ନା, ସେକଥା କହିଲେ ହବ ? ଯେମିତି ହେଲେ ମତେ କ୍ଷମାଦେବାକୁ ହବ ନା···

ଦୁର୍ବା—ଆରେ ଯୋଗେଶ ବାବୁ, ଆପଣ ?

ଯୋଗେଶ—ହାଁଜୀ-ହାଁଜୀ ! ଆଜ କଷ୍ଟି ମାତୃକର ସୁବିଧାପାଇ ଏକାବେଳକେ ରଜା ଗୃହଲଟେ ଚଳେଇଦେଇଚି ଆଜ୍ଞା ! କାହାକୁ ସାଙ୍ଗରେ ଆଣିଚି ଦେଖିଲେଣି ? ରାସ୍ତାରେ ବୁଲୁଥିଲେ; ମୁଁ ତାଙ୍କୁ ମଟରରେ ବସେଇ ନେଇଆସିଚି···ଏଥର ଦେଖିବା କ'ଣ ହଉଚି । ନୂଆବୋଉ ! ନିଅ; ସମ୍ଭାଳ ଏଥର ତୁମର ଅମାନତ୍ ।

(ପ୍ରବେଶକଲା-ଶୁଭ, ହାତରେ ତା'ର ସେଇ ମୋଜାଦୁଇଟି; ପାଗଳ ଅବସ୍ଥା···ଦୁର୍ବା ଓ ମଧୁ ଚମକିପଡ଼ିଲେ । ଶୁଭ ଧୀରେ ଧୀରେ ଭିତରକୁ ଆସିଲା; ମଧୁ ମୂର୍ଚ୍ଛିଆ ମାରିଲା)

ଶୁଭ—କାହିଁ ? କାହିଁ ? ତାକୁ କିଏ ନେଇଗଲା ? ସିଏ ମତେ ପାଦୁକ ଦେଲା, ଝଙ୍କା ଦେଲା; କହିଲା ସଂଧ୍ୟାଆଗରୁ ଉଲ୍ଟ୍ କରି ଫେରି ଆସିବାକୁ—ହେଲେ କାହିଁ ? କୁଆଡ଼େ ଗଲା ?

ମଧୁ—ଆଗୋ ! ତୁମର ଯେ କ'ଣ ହେଲା ! ତୁମେ କ'ଣ ମତେ ଚହ୍ନି ପାରୁନ ? ତୁମେ କ'ଣ ସବୁ ଭୁଲିଗଲ ? ଭାଇ ! ମୋ'ର ଏ କ'ଣ ହେଲା ଭାଇ ? ମୋର ଏ ସର୍ବନାଶ କିଏ କଲା ?

ଦୁର୍ବା—ମଧୁ ! ତୁ ଧୈର୍ଯ୍ୟ ହାରିଦଉଚୁ ? ଯୋଉ ଧୈର୍ଯ୍ୟ ଧରି, ବନ୍ଧ ବାନ୍ଧି ଦଶ ବର୍ଷ କାଳ ଦୁଃଖ ଯାତନାର ଜୁଆର ଭିତରେ ତୁ ସ୍ଥିର ରହିଥିଲୁ ; ଆଜ ସେ ଧୈର୍ଯ୍ୟ କ'ଣ···

ମଧୁ—କାହାଲାଗି ଆଉ ଧୈର୍ଯ୍ୟ ରଖିବ ଭାଇ ? ଯାହାଙ୍କୁ ଫେରି ପାଇବାର ଆଶା ନେଇ ମୁଁ ବର୍ଷ ବର୍ଷ ଧରି ଅପେକ୍ଷା କରିଥିଲି, ଆଜ ସେ ଯେତେବେଳେ ମତେ ଆଖି ଆଗରେ ଦେଖି ବି ଚିହ୍ନି ପାରୁନାହାନ୍ତି···

ଦୁଗ—ଏ ସବୁ ମୋର ଲାଗି ମଧୁ ! ମୋର କଥା ରଖି ତୁ ଘର ଛାଡ଼ି ଯାଇନୁ; ମୋର ଶିକ୍ଷା ଲାଗି ତୁ ନିଜର ସ୍ୱାମୀର ଶିକ୍ଷାକୁ ଅବହେଳା କରିଚୁ । ତୋ'ର ସବୁ ଦୁଃଖର କାରଣ ମୁଁ ।

ମଧୁ—ଭାଇ !

ଦୁଗ—ଯୁଝିଯା ମଧୁ ! ଆଜମତେ ଉଠିବାକୁ ହବ । ମୁଁ ଯାଇ ଗୀତା ଦେବୀଙ୍କୁ ପଚାରିବ, ବୃଥା ଆଭିଜାତ୍ୟର ଅହଙ୍କାର ନେଇ ସେ କେତେ ଦିନଯାଏ ଗୋଟିକ ପରେ ଗୋଟିଏ ଜୀବନ ନଷ୍ଟକରି ଚାଲିବେ ? ଯାହା ତୁ ନିଜ ହାତରେ ଗଢ଼ିଥିଲୁ, ତାକୁ ଭାଙ୍ଗି ଚୂନାକରି କି ଗୌରବ ସେ ପାଇଲେ ? ଭଦ୍ର ଘରର ଝିଅ—ଭଦ୍ର ଘରର ସ୍ତ୍ରୀ କ'ଣ ଏଇଆ ?

ମଧୁ—ତୁମେ ସ୍ଥିର ହୁଅ ଭାଇ ! କାହାରି କିଛି ଦୋଷ ନାହିଁ, ସବୁ ମୋ କପାଳର ଦୋଷ ।

ସୁବା—(ପ୍ରବେଶି) ଓଃ ! ତୁମେ ଦୁହେଁ ଏତେ ପାଟିତୁଣ୍ଡ କଲେ ମୁଁ ପଢ଼ିବ କମିତି ? (ଶୁଭକୁ ଦେଖି) କିଏ ? ସାର୍ ! ଆପଣ ପୁଣି କାହିଁକି ଏଠିକି ଆସିଛନ୍ତି ସାର୍ ? ଥରକ ଲାଗି ଏ ଘରକୁ ଆସି ଥିଲେ ଯେ ବୋଉକୁ କ'ଣ କହିଲେ କେଜାଣି, ସେଦିନଠୁ ବୋଉ ଆଖିରୁ ଲୁହ ଶୁଖିବାକୁ ନାହିଁ । ବୋଉ ଆଉ ମାମୁଁଙ୍କ ଭିତରେ ସବୁ ବେଳେ କନ୍ଦାକଟା କଳି-ତକରାଳ ଲାଗିଚି ।

ଆଜ ପୁଣି କାହିଁକି ଆସିଚନ୍ତି ? ଆପଣ କ'ଣ ମୋ ବୋଉକୁ କନ୍ଦେଇ କନ୍ଦେଇ ମାରି ଦବାକୁ ଚାହାଁନ୍ତି ?

ମଧୁ—ସୁବା !! ଚୁପ୍ କର୍, ଚୁପ୍ କର କହୁଚି ।

ସୁବା—ନା ବୋଉ ! ସବୁ ଦୁଃଖ ମୁଁ ସହିବି, ହେଲେ ତୋ' ଆଖିର ଲୁହ ମୁଁ ସହି ପାରିବିନି; ତାଙ୍କର ଏ ଘରେ କି କାମ ଅଛି ? ସେ କାହିଁକି ଏଠିକି ଆସିଚନ୍ତି ?

ଦୁର୍ଗ—ସୁବା ! ତୁନିହ; ଆରେ କାହାକୁ ତୁ କ'ଣ କହୁଚୁ ? ଯୋଉ ବାପାଙ୍କୁ ଦେଖିବୁ ବୋଲି ତୁ ଉଦ୍ଭଟ ବିକଳ ହଉଥିଲୁ ସେ ପରି ସେଇ ତୋ'ର ବାପା !

ସୁବା—ବାପା ! ସାର୍ଥ ମୋ ବାପା ! ? ବାପା ତୁମେ ଏତେ ଦିନଯାଏ କାହିଁକି ପରିଚୟ ଦେଇନ ? ଏ ଘରକୁ ଆସିଚ, ଆମ ସାଙ୍ଗରେ ମିଶିଚ; ହେଲେ ଟିକିଏ ନ ଦେଇ କାହିଁକି ଚୁପ୍ ରହିଚ ବାପା ? ବୋଉ ତୁମ ପାଖରେ କି ଦୋଷ କରିଥିଲା ଯେ, ତୁମେ ତାକୁ ଏତେ ଦିନ ଧରି କନ୍ଦେଇଲ । ମୁଁ କି ଦୋଷ କରିଥିଲି ଯେ, ଥରେ ହେଲେ ମତେ ପୁଅ ବୋଲି କୋଳକୁ ଟାଣି ନେଇନ ? କୁହ ବାପା, କୁହ !

ମଧୁ—ସୁବା !

ଦୁର୍ଗ—ଚୁପ୍ ରହ ସୁବା, ଚୁପ୍ ରହ । ତୋ ଅଭିମାନିଆ କଥାରେ ମୋ ଛାତିକି ଛିନଛିନ କରିଦେ'ନା । ଆରେ ସେ ଯେତେ ଯାହା ଭୁଲ୍ ଅନ୍ୟାୟ କଲେବି ସେ ଯେ ତୋର ବାପା ! ପାଦଧୂଳି ନେରେ ପାଗଳା, ହାତଧରି ଘରକୁ ଡାକନେ । ଆଜ ଦଶବର୍ଷ ପରେ ସିଏ ଆସିଚନ୍ତି; ତାଙ୍କୁ ତୁ କଷ୍ଟ ଦଉଚୁ ? ମଧୁ ! ଆଲୋ ଯା' ସ୍ୱାମୀଙ୍କୁ ତୋର ଭିତରକୁ ନେଇ ଯା'; ତାଙ୍କୁ ସୁସ୍ଥ କର, ତାଙ୍କର ସେବା କର । ଯୋଉ ସ୍ନେହ ପରଶ ଦେଇ ତାଙ୍କୁ

କୁ ପ୍ରକୃତସ୍ଥ କରିଥିଲୁ; ଆଜି ସେଇ ସ୍ନେହ ଆଉ ଭଲପାଇବା ଦେଇ ତୋର ସଂସାରକୁ ତୁ ପୁଣି ଥରେ ସଜେଇ ନେ ।

ଗୀତା—(ପ୍ରବେଶି) ଅପା, ଅପା ! ମତେ କ୍ଷମାକର ଅପା ! ଆଜିଠୁ ତୁମେ ମୋର ବଡ଼ ଭଉଣୀ ! ତୁମକୁ ଗୋଇଠା ମାରି ମୁଁ ଯୋଉ ଜଣଙ୍କୁ ନଜର କରିଥିଲି, ତାଙ୍କୁ ଯତନରେ ରଖି ପାରିଲିନି । ତୁମ ପାଖରେ ମୁଁ ହାରିଯାଇଛି ।

ମଧୂ—ଛିଃ; ଏସବୁ କ'ଣ କହୁଛ ଗୀତା ?

ଗୀତା—ଅପା ! ଏଇ ଆମର ସ୍ୱାମୀ, ଏଇ ଆମ ମଥାର ସିନ୍ଦୂର । ତୁମେ ଚାଲ ଅପା ! ମିଶ୍ର ବଂଶର ବଡ଼ ବୋହୂର ଆସନରେ ବସି ତୁମେ ମତେ ଆଦେଶ ଦେବ ଚାଲ; ତୁମେ ନ ଗଲେ ଯେ' ଆମ ମଥାରୁ ସିନ୍ଦୂର ଲିଭିଯିବ ସବୁଦିନ ଲାଗି !

ମଧୂ—ଗୀତା ! ସେ କଥା ମୁହଁରେ ଧରନ୍ତୁ ?

ଗୀତା—ଚାଲ ଅପା ! ମତେ କ୍ଷମାକର, ତୁମ ପାଦ ଧରୁଛି···

ମଧୂ—ଛି, ଛି, ଏ କ'ଣ କରୁଛ ଗୀତା ! ଉଠ ଭଉଣୀ, ଉଠ । ଆଜି ତୁମେ ଦୁହେଁ ଯେତେବେଳେ ମତେ ନେବାକୁ ଆସିଛ, ମୁଁ ବୁଝିଛି ମୋର ସାଧନା ପୂର୍ଣ୍ଣହୋଇଛି; ଅଗ୍ନି ପରୀକ୍ଷାରେ ମୁଁ ସଫଳ ହୋଇଛି ।

ଦେବ—(ପ୍ରବେଶ କରିଛନ୍ତି ଆଭା ସହିତ) ମୁଁ ଜାଣିଥିଲି ମା'···ତୁ ନିଶ୍ଚୟ ସଫଳ ହେବୁ । ମୁଁ ଦିନେ କହିଥିଲି ନା, ମଶାଣିରୁ ଯୋଉ ଫୁଲଟି ମୁଁ ତୋଳି ଆଣିଥିଲି ସେ ଘାସଫୁଲ ନୁହେଁ, ରଜନୀ ଗନ୍ଧା । (ଆଭାକୁ) ଯା ମା' ! ତୋର ବଡ଼ ବୋଉକୁ ମୁଣ୍ଡିଆ ମାରି; ଭାଇକୁ ନମସ୍କାର କର ।

(ଆଭା ତଥାକରଣ; ଆଭା ଓ ଧ୍ରୁବ ଶୁଭଦାତାରୁ ମୋଜା ନେଲେ)

ଶୁଭ—ତୁ ଫେର ଆସିଚୁ, ଫେର ଅସିଚୁ ରେ ହତଭାଗା ?

ସବିତା—(ପ୍ରବେଶି) କାହିଁ, ମୋ ମଧୁ କାହିଁ ଦେବ ! ମୋ ମଧୁ ?
ତାକୁ ଦେଖେଇବ ବୋଲି ଡାକିଆଣିଲ; କାହିଁ ?

ମଧୁ—ବୋଉ ! (ମୁଣ୍ଡିଆ ମାଇଲା)

ସବିତା—କିଏଲେ ? ତୁ କିଏଲେ ? ଆଲେ ମଧୁ ! ତୁ ଆସିଚୁ ?
ଦଶବର୍ଷ ପରେ ତୁ ଫେରି ଆସିଚୁ ? ମୋ ଉପରେ ଏମିତି
ଅଭିମାନ କରି ରହିଲୁ ଯେ, ଥରେ ହେଲେ ଫେରି ଗୃହିଁଲୁନି ?
କାହିଁ ,ମୋ ନାତିକି ଦେ'ଲେ ! ମୁଁ ତାକୁ ଟିକିଏ କୋଳ
କରେ, ଦେ'ଲେ !

ଆଭା—(ସୁବାକୁ) ଜେଜେମା ! ହେଇ ନିଅ ତୁମ ନାତି ।

ସବିତା—ମୋ ନାତି, ତୁ ମୋ ନାତି ? ହିଁ, ତୁ କହିଥିଲୁ ତ !
ମୋ ନାତି, ମୋ' ବୋହୂ ! (ମଧୁ ମୁଣ୍ଡିଆ ମାରିଲା)

ମଧୁ—ବୋଉ ! ମୋର ଏ ସାନ ଭଉଣୀଟିକୁ କ୍ଷମାଦେଇ
ଆଶୀର୍ବାଦ କରିବେନି ?

ସବିତା—ଆ-ଆ···(ଗୀତା ମୁଣ୍ଡିଆ ମାରିଲା)

ଦେବ—ଦୁର୍ବାବାବୁ ! ଆଜି ବଡ଼ ଆନନ୍ଦର ଦିନ । ଦଶବର୍ଷ ତଳେ
ଯୋଉ କାହାଣୀର ସୂତ୍ରପାତ ମୁଁ କରିଥିଲି, ଆଜି ତା'ର
ପରିସମାପ୍ତି କରିପାରିଚି । ତୋଳା କନିଆଁକୁ ତା'ର ନାଯ୍ୟ
ପ୍ରାପ୍ୟ ଦେଇପାରିଚି । ମିତ୍ରବଂଶ ପ୍ରତି ମୋ କର୍ତ୍ତବ୍ୟ ପୂର୍ତ୍ତି
କରିପାରିଚି । ଆଜି ମୋର ବଡ଼ ଆନନ୍ଦର ଦିନ ! ଚାଲ୍ ମା' !
ଘରକୁ ଚାଲ୍ ।

ଦୁର୍ବା—ଦେବ ବାବୁ ! ମିତ୍ର ଘରର ଅମାନତକୁ ମୁଁ ଦଶବର୍ଷ ଧରି
ଯତ୍ନରେ ସାଇତି ରଖିଥିଲି । ମଧୁକୁ ଘରକୁ ନେଇ ମତେ ଏ
ଦାୟିତ୍ୱରୁ ଏଥର ମୁକ୍ତ ଦିଅନ୍ତୁ ।

ମଧୁ—ସଇ ! ମାଦ ଭୁମେ...

ଦୁର୍ଗା—ମୋ ଲାଗି ଚିନ୍ତା କରନା ଲୋ ଭଉଣୀ ! ମୁଁ ଠିକ୍ ଅଛି । ଦଶବର୍ଷ ପରେ ଆଜ ତୋ ଆଖିରୁ ଲୁହ ଶୁଖିଚ, ମୁହଁରେ ହସ ଫୁଟିଚ; ଆଜ ମୋ ମନରେ ଯେ କ ଆନନ୍ଦ, ତା' ତୁ ବୁଝି ପାରିବୁନ । ଯା-ଯା, ତୋର ସ୍ୱାମୀ, ଶାଶୁ, ସାନ-ଭଉଣୀ ସମସ୍ତଙ୍କୁ ସାଙ୍ଗରେ ନେଇ ମିଶ୍ର ପରିବାରରେ ଆନନ୍ଦର ଢେଉ ଛୁଟେଇ ଦେ' ।

× × ×

—ଯବନିକା ପତନ—

———

# ଗୀତାଂଶ

ସଙ୍ଗୀତ ରଚନା ଓ ସ୍ୱର-ଯୋଜନା:—

କିଶୋର କବି **ଶ୍ୟାମସୁନ୍ଦର ଦାସ**

୧**ମ ଅଙ୍କ**—୩ୟ ଦୃଶ୍ୟ—(ଚନ୍ଦ୍ରିକା)

ପ୍ରୀତି...

ପ୍ରୀତି ଶାଣଦିଆ ନୂଆ ତରବାରି
ଛୁଇଁଲେ ପଶିଲେ ଦିଏ ବୁକୁ ଚିରି।
ମିଠା ମମତାର ପରଶମଣିରେ,
ପାଲଟେ ଶିବୁକ ଛୁଆଁ ସୁନାଶିରି ॥
ସାତତାଳ ପଙ୍କ ସୁନା ଫରୁଆରେ
ପ୍ରୀତି ଜଉମୁଦା ସୀଲ ନୁହେଁ,
ପ୍ରୀତି ମରମ ଉଜୁଡ଼ା ମୂଲ ନୁହେଁ,
ପ୍ରୀତି ଫଗୁଣ ପାଛୁଡ଼ା ଫୁଲ ନୁହେଁ,
ପ୍ରୀତି ମଳୟ ଉଜୁଡ଼ା ଗେଲ ନୁହେଁ,
ପ୍ରୀତି ଗୁନ୍ଦ କୁମୁଦରେ ଭୁଲ ନୁହେଁ;
କି ଦରବ ପ୍ରୀତି, ବୁଝାଇବା ମିଛ,
ଯେତେ ଅନୁଭୂତି ସେତିକି ପରଚ,
ସେ ରସେ ବୁଡ଼ିଛୁ ଯା ଜୀବନ ଯାକ
ପାଗ୍ଛେଟି ସ୍ୱାଗତ କରିଛୁ ବିବେକ;
ସେ ଜହ୍ନରି ଶିଙ୍କା, ସେ ରତନ ସିନା,
ଜାଣେ ସେ ଭଲ କି ଭଲ ନୁହେଁ।

———

**୧ମ ଅଙ୍କ—୭ମ ଦୃଶ୍ୟ—(ବେଲୁନ୍)**

ଭାଗ୍ୟ ! ଭାଗ୍ୟ !! ଭାଗ୍ୟ !!!
ଗଣନା···ଗଣନା···ଗଣନା···ଗଣନା···
(ତୁମ) କର, କୋଷ୍ଠି, କପାଳ !
ଝଟପଟେ ଆଖିରେ ଜଳଜଳ,
ମୁଠେ ମୁଠେ ଫଳାଫଳ ।
ହେ ଭୂତ ! ଭବିଷ୍ୟ, ବର୍ତ୍ତମାନ କାଳ ଜାଣି ଯା !
ଚତୁର୍ଥ—ଦ୍ୱିତୀୟ—ଶୂନ୍ୟ କାରବାର,
ମାତ୍ର ଦୁଇଟଙ୍କା !
କଙ୍କାଳମାଳୀ ଓଁ କାଳୀକାଇ ମାଈ
ସାଧନା ଚିରକାଳ !
ମାଦଳା ବେପାର, କଳା କାରବାର,
ଧଳା ରୋଜଗାର, ଓହଳା ବାହାଘର,
ଜମି ଜମା ଖମା, ମାମଲା ମକଦ୍ଦମା,
ଆହୁରି କହିବ ରୋଗ-ଆରୋଗ୍ୟ !
ଭାଗ୍ୟ ! ଭାଗ୍ୟ !! ଭାଗ୍ୟ !!!
ହେଉଛି, ହେଉଛି ! ଓ ଚୂଟି ! ଚୂଟି !
ଆସ ଲେଉଟି !

× × ×

ହୋ ହୋ ହୋ ଭାଗ୍ୟବାଲା !
ଦେଖେଁ ଦେଖେଁ ଦେଖା ହାତ ।
ଦେଖା ଦେଖା ଏବେ ବେଳ ପଡ଼ିଛି ହୁଗୁଳା,
ଗୁଳା ପକା ପକା···

ସୁନା ପାଲଟିବ ଛୁଇଁବୁ ଯା'ହାତ,
ଗିନିସୁନା ପାଲଟିବ ଛୁଇଁବୁ ଯା'ହାତ ॥୦॥
(ଆହା) ଖଣ୍ଡିଆ– ହାତ ତୋ ହାତ ଖଣ୍ଡିକରୁ
ଖଣ୍ଡିଛୁ ଲାଜ ସରମ; ଜାଣିଲୁ, ଜାଣିଲୁ ?
(ଖଣ୍ଡିଆ-ହାତ ବୋଇଲେ ଆମର କାଳିଆ ଦିଅଁ ଜଗନ୍ନାଥ;
ତୋ ହାତ ଖଣ୍ଡିକରୁ ସବୁ ଲାଜ ସରମ ଖଣ୍ଡି ନେଇଛୁ । )
କାହା ଶଳା କାହା ଶଶୁର ହୋଇ ତୁ
ରଖିବୁ ପକେଟ ଗରମ, ଜାଣିଲୁ, ଜାଣିଲୁ ?
ହୋ···ହୋ···କୁଜା ସାଙ୍ଗରେ କଣା ଅଛୁ,
ଟାଉଟରିଆ ଜଣାଅଛୁ,
କଳପନା ଅଛୁ, ଅଛୁ, ଅଛୁ;
ଯା'ର ଖାଇବୁ ଓପାଡ଼ିବୁ ତା' ମୂଳଦୁଆ ତ-ଦେଖା ହାତ ॥୦॥
(ଅନ୍ୟ ଜଣକୁ) ବାଃ···ବାଃ···ବାଃ···ଗିରି କହୁଚି ଅଗିରି ସଙ୍ଗେ
ଗେଣ୍ଡୁପାଛଡ଼ା ପୀରତି ॥
(ତୁମ ହାତର ଗିରି କହୁଛି, ଅଗିରି ସେ ଏକଜାତିଆ କଣ୍ଟା-
ଗଛ, ତା'ର ଫଳରୁ ଗେଣ୍ଡୁପାଛଡ଼ାଇ ମଂଜ ସାଙ୍ଗରେ ତୁମର
ପ୍ରୀତି ବଢ଼ିବ, ଅର୍ଥାତ୍ ତୁମେ ଧିବଲାଭ କରିବ । )
ସେନେହ ଶକ୍‌କଣ ଶଜ ବେପାରରେ
ତେଜିବ ତୁମ ବଣ୍ଟା···ହୋ ବାବୁ !
ରାତିକେ କଷିବ ହାଣ୍ଡି ॥
( ସେନେହ ଶକ୍‌କଣ ଶଜ; ବୋଇଲେ କ ସ୍ନେହ ଜାତୀୟ
ଶକ୍‌କଣ ପଦାର୍ଥ ବିଶେଷ । ଅର୍ଥାତ୍ ସର୍ଷପ ତୈଳ କ ସୋରିଷ
ତେଲର ବେପାର ତୁମେ କରିବ । ଆଜି ସେଇ ବେପାରର
କଳା କାରବାରରେ ତୁମେ ବଡ଼ି ଖୁବ୍ ତେଜ ଉଠିବ; ମାନେ,
ତୁମେ ବାବାଟରେ ଆଳୁଅ ଦିଶିବ ।)

ଯୋଡ଼ାଏ କଳା ଅଛୁ,
ଗୁଡ଼ାଏ ଜଳା ଅଛୁ ।
ଏକରେ ବୋଇଲ କୃଷ୍ଣ କଳା, ହଜାରେ ଗୋପି ହେବେ ଝକଳା,
ଦୁଇରେ କଳା କାରବାର କଳା, ହଜାର ହଜାର ଘୁଞ୍ଚିବା ଖଲା ।
ନହେଲେ ରହୁଚ୍ଛ ଯେ ଗୁଡ଼ାଏ ଜଳା !
ବୋହୁଯିବ ଯିମିତ ଶିଖବଣ ଯିଖ;
(ଅଛୁ) ସମାନ ଆଇଲ ଗଲ···ବାବୁ ହେ
ଗୋଦର କୋଡ଼େ ଯେତେ ମାଡ଼େ ଢାହା ତ ॥୨॥

———

୧ମ ଅଙ୍କ—୭ମ ଦୃଶ୍ୟ (ଚନ୍ଦ୍ରିକା)

ଅହନଅାଁ ଅମାନଅାଁ, ପୁଷରେ !
କେତେ ମିଛେ ଡାକ ଦେଉ ?
"ମ୍ୟାଉଁ···ମ୍ୟାଉଁ···ମ୍ୟାଉଁ···॥୦॥
ତୁମର କଥା ସତ-ସଞ୍ଜକା ଦେବୁ କ କହ ରେ,
(ମୋ) ସ୍ଳତ ଛୁଇଁ, ଓଠ ଛୁଇଁ,
ଦେବ କ୍ଷୀର ଗଜାରେ, ମୁଣ୍ଡା ମାଛ ଭଜାରେ,
ଦେବ ଯେତେ ଯା' ଖୁଣ୍ଟିବୁ ଆଉ ପୁଷିରେ ॥ ୧ ॥
ଉଡ଼ୁ ପବନ ଘୋଡ଼ା ଉଡ଼ାଇ,
ସାତ ଦରିଆ ସତର ନଈ,

ପାର ହୋଇ କାଉଁରୀ ରାଇଜ
ରାଜାପୁଅ ସେ ଆସିଲା,···
ପଦୁଅଁ ପୋଖରୀ ଦାଢ଼େ,
ଗାଧୁଆ ପାହାଚ ବାଟେ
ମୋହନ ମୂଲକ ରାଜ ଦୁଲାଳୀ, ଅଳଅଳୀ ସେ,
ଶୋଭା ରୂପେଁ ରସିଲା···
ଆଖି କଣଟିରେ ଆଖି ମିଶିଲା
ମିଶିଲା ମରମ ରୂହୁଁ ରୂହୁଁ, ପୁଷି ରେ ॥୨॥

ଜେମା ଛନ ଛନ ରଜାପୁଅ ହାଇଁ ପାଇଁ ରେ,
ଭେଳକି ଲଗାଇ ନେଜେ ହଜିଗଲା କାହିଁ ରେ;
ଅମୂହାଁ ଗମ୍ଭିରୀ ଘରେ, କବାଟ କିଳ ଭୂଇଁରେ,
ଲୋଟୁଛି ରାଜ କୁମାରୀ, ବାହୁନ ଅଧର ମହୁ, ପୁଷିରେ ॥୩॥

---

## କସ୍ତୁରୀ ବେଣୀ (ନୃତ୍ୟ-ନାଟିକା)

### ୨ୟ ଅଙ୍କ—୨ୟ ଦୃଶ୍ୟ

ଘୋଷକ—ଧାକୁଲା ଗାଁର ଧାକୁଲା ବୁଢ଼ା,
ରଙ୍ଗା ଟେକିଥିଲା ଗୁହାଳ ପିଢ଼ା;
ଗୁହାଳ ପିଢ଼ାରେ କସ୍ତୁରୀ ଲଟି ନେ
କଷି ଲଦ୍‌ଦେଲା ଗଣ୍ଡିକ ଗଣ୍ଡି;

ହଳଦ ମାଳପା ଶକ୍‌କଣ ବେ'ଳ,
ଝୁପି କଲୁଷଟି ଖେଳୁଛୁ ଦୋଳ;
ଝୁଙ୍କି ବୁଲୁଥିଲା ଟାଉକା କାଉ,
ଆଖିରେ ଲାଗିଲା କଲୁଷ ବୋହୁ
କା'···କା'···କା'···ପାଖରେ ହେଲା ଠିଆ;
କଣେଇ କଣେଇ ଗୃହେଁ···ସୁଆଦିଆ କଥା କହେ···
କାଉ—"ଝୁପି କଲୁଷ ଲୋ କଲୁଷବେଣ୍ଟ,
ସତେ ତୁ ସୁନ୍ଦର କେତେ ଚହଟ;
ଆ···ମୋ ବସାରେ କୁଣିଆ ହେବୁ,
ମୋ ଭୁଲେ ଅଶୋକା କଢ଼ି ବସିବୁ;
ଥଣ୍ଟରେ ଝୁଲାଇ ନେବ ଲୋ ଝୁପି,
ମନଜାଣି ତତେ କରିବ ଖୁସି, (ମୁଁ),
ଝୁପି— ଯିବ ମୁଁ ସତେ···ତୁମ ସଙ୍ଗତେ,
ନକର ହଟା ଗୋ ନକର ହଟା,
ଥଣ୍ଟରେ ଲାଗିଛୁ ଅଇଁଠା କଣ୍ଟା;
ଯିବନ ଅସନା ଜାଣିଲେ, ଧୋଇଆସ ଥଣ୍ଟ ପାଣିରେ ॥
କାଉ—ଓ ହୋ···ହୋ···ହୋ; ଏଇ କଥାକୁ,
ନାଆ ପେଲି ଦେଲି କଲିକତାକୁ;
ଯିମିତ କହିବୁ କରିବ ତାହା,
ଥଣ୍ଟ ଧୋଇ ଆସେ ଥା'ଲେ ଥା' ॥ କା···କା···କା···
( କୂଅ ପାଖରେ ପହଞ୍ଚି )
କା···କା···କା···ତଣ୍ଟି ଶୁଖିଗଲା, ଆଃ !
କୂଅ—କରେ, କରେ, କାଉ ଡାଆଣା, ଘଷିଆଣା ?
ଅଲଣାକୁ କରୁ କେତେ ବାହାନା ?

କାଉ—ଚୋ ଶୁଣଲେ, ମିଛ ବୁଝ୍‌ନା,
ମିଛ କହୁଥିଲେ ଛୁଡ଼ବ ଡେଣା;
ଦେ’ କୂଅ, ଦେ’ଲେ ପାଣି,
ଧୂଏଁ ଥଣ୍ଟ, ଧାଇଁ ଧାଇଁ ନଏ କଲୁଷ ବେଣ୍ଟ ॥
କୂଅ—ଆରେ ଚଗଲା, କପଟ ଓଲା, କମିତ ଦେବ ମୁଁ କହତ ଭଲ !
ନହୁଅ ଠିଆ, ନହୁଅ ଠିଆ, କୁମ୍ଭାର ଘରୁ ତୁ ଆଣ ମାଠିଆ ॥
( କୂଅ ଅଦୃଶ୍ୟ ହେଲା, କାଉ ଉଡ଼ ଗୁଲଗଲା )
କାଉ—କୁମ୍ଭାର ମଉସା ହୋ, କୁମ୍ଭାର ମଉସା !
ଅଛ ଘ’ଟି ? ଆସ ଝଅଟି,
ଗଢ଼ିଦଅ ମୋତେ କଳଶ ଗୋଟି;
କାଢ଼େ ପାଣି, ଧୂଏଁ ଥଣ୍ଟ, ଧାଇଁ ଧାଇଁ ନଏ କଲୁଷ ବେଣ୍ଟ ॥
କୁମ୍ଭାର—ନାଇଁରେ ପୁଅ ଚକଟା ମାଟି,
ଚକ ପଡ଼ିଛୁ ଦାନ୍ତ ନକୁଟି;
ହୁଙ୍କାରୁ ଚକଟା ମାଟି ଘିନଆ,
କଳଶି ଗଢ଼ିବ ଠଣଠଣିଆ ॥
(କୁମ୍ଭାର ପ୍ରସ୍ଥାନ । କାଉ ଉଡ଼ଗଲା ହୁଙ୍କା ପାଖକୁ )
କାଉ—ହୁଙ୍କା ଦାଦ ଲୋ, ହୁଙ୍କା ଦାଦ !
ମୁଁ ନେହୁରା ହଉଚ ତତେ,
ମାଟି ଆଞ୍ଜୁଳାଏ ଦେ’ନ ଭଲ, ଦାଦ,
(ତୋର) ବଢ଼ନ୍ତ ହେବ କେତେ;
ଚକଟି ଚକଟି, ଗଢ଼ କୁମ୍ଭାର କଳଶ ଗୋଟି,
କାଢ଼େ ପାଣି, ଧୂଏଁ ଥଣ୍ଟ, ଧାଇଁ ଧାଇଁ ନଏ କଲୁଷ ବେଣ୍ଟ ॥
ହୁଙ୍କା—ଆରେ-ରେ-ରେ, ଆରେ ଧୁଡୁରା, ଗୁଇଁ ଚଢୁରା !
ବଣକୁ ଧାଇଁ ଯା’ ତୁ’ ଆଗତୁରା;

ଜଣୁନ ବନରେ ଝାଡ଼ ମିରଗ,

ତା'ଠୁ ଆଣିବୁ ଝାମ୍ପିଲ ସିଙ୍ଘ;

ଯେତେ ଇଚ୍ଛା ସେତେ ନେ'ରେ ମାଟି ।

କାଉ— ଦାନ୍ଧ ଲେ ଇଲଗେ ଯାଏ ଝପଟି ॥

ଆ···ଆ···ଆ···କା···କା···କା···

(କାଉ ଉଡ଼ଯାଇ ମିରଗ ମାଖରେ ପହଞ୍ଚିଲା )

କାଉ—ଝାଡ଼ ମିରଗରେ ତୁ' ପର ମୋର ପୁରୁଣା ମିତ !

ଧନା କେତେ ଦୁହେଁ ବୁଲିଛୁଁ କେତେ ଖେତ-ବନସ୍ତ ?

ଗରଜ ପଡ଼ିଲା ଅକାଳେ ପାଶେ ଅସିଲି ଧାଇଁ,

ଝାମ୍ପ ଲ ସିଂଘରୁ ଦେନାଏ ଚୋର ଦେ'ନା ଭାଇ !

ହୁଙ୍କାଦାନ୍ଧ ଦେଉ ମାଟି, ଗଢ଼ୁ କୁମ୍ଭାର କଳସ ଗୋଟି,

କାଢ଼େ ପାଣି ଧୁଏଁ ଥଣ୍ଟ, ଧାଇଁଧାଇଁ ନଏ କଲୁଷ ବେଣ୍ଟ ॥

ମିରଗ—ଭଲ କଥା ଏକା କହିଲୁ କାଉ,

ସିଂଘରୁ ଦେନାଏ ଲାଗିବ କାହୁଁ ?

ଟୁମି ଟୁମି ହେବ ମଥା ରେ,

ଜନ୍ଧଣ୍ଡା ପାଟରୁ କାଲୁଡ଼ିଆ ଘାସ

ଖାଇଲେ ମରିବ ବଥା ରେ ॥

କମାର ପାଖରୁ ଦାଆଟି ଘିନ,

କାଲୁଡ଼ିଆ ଘାସ ଆଣିବୁ ଛିଣ୍ଡି;

ଖାଇ ତାଜା ହେବ, ପୂରିବ ପେଟ,

ଭାଙ୍ଗି ଦେବ ସିଙ୍ଘ ର'ଟ ମଟ ॥

କାଉ—ଭଲ ମନକଲା ରୂପରେ ଭୁଲି, ଚୁପିକ କରିବ ଅଶୋକା କଢ଼ି !

ଥା'ରେ ଝାଡ଼ମିରଗ ଥା', କମାର ଘରୁ ଆଣେ ଦା' ॥

(କମାର ପାଖକୁ ଯାଇ—)

କମାର ମାମୁଁ ହେ କମାର ମାମୁଁ,
ଦା' ଖଣ୍ଡେ ଗଢ଼ି ଦଅନ୍ତ !
ଝୁମ୍ପି କଲୁଆକୁ ବସାକୁ ନେବ ବୋଲି,
କଲଣି ମୁଁ କେତେ ମିହନ୍ତ !!
ଦେଉ ମିଶାଗ ସିଙ୍ଘ କାଟି, ହୁଙ୍କା ଦାନ୍ଧ ଦେଉ ମାଟି,
ଗଢ଼ୁ କୁମ୍ଭାର କଳସ ଗୋଟି—
କାଟେ ପାଣି, ଧୂଏଁ ଅଣ୍ଟ, ଧାଇଁ ଧାଇଁ ନଏ କଲୁଆବେଣ୍ଟ ।
କମାର—କାଉ ଭଣଜା, କାଉ ଭଣଜା,
ଚେଁଚିବ ଇଲଟେ କହ୍ନଦେଲୁ ଯା;
(ହେଲେ) ଚଢ଼େଇ ଜାନ୍ତ, ନେବୁ କମିତ ?
କାଉ—ଏସ କଥାକୁ ମାମୁ ଯବୁଚ କଆଁ ?
ଥୋଇଦଅ ମୋର ପିଠିରେ ଦାଆ ॥
ଘୋଷକ—କମାର ଗଢ଼ିଲା ଦାଆ ପାଟିଆ,
ହେଣ୍ଡି ମାର ବୁଲେ କୁଆ,
ଚଢ଼୍...ଚଢ଼୍...ଚଢ଼୍...ଚେଁ ଲୁହା;
ପିଠେ ପଟାଇଲା କାଉ,
ଥୋଇଦେଲା କମାର ଦାଆ ଖଣ୍ଡିକ, ତତଲା ଥାଉଁ ଥାଉଁ,
ଚଢ଼ ଚଢ଼ ନଆଁ ଧଇଲା ଚୁଟି,
ଛଟପଟ ହୋଇ ମଲା ସେ କାଉଟି;
କଲୁଆ ବେଣ୍ଟର କାହାଣୀ ଶେଷ ହେଲାରେ ପିଲା,
ଅଲଣା ଆଶାରେ ପଡ଼ବନ କେବେ ହୋଇ ଚଗଲା ॥



## —ଆମ ପ୍ରକାଶିତ ଯୁଗାନ୍ତକାରୀ ନାଟକାବଳୀ—

ରକ୍ତମନ୍ଦାର, ବାଜୁଅଣ୍ଟିଅ, ବାହୁଡ଼ାବେଳେ, ଜମାନବନ୍ଦୀ, ଅପରାଜିତା,
ଚୋପାନପରେ, ଝଥାଟିସତ, ଅମୃତଲଗ୍ନ, ଜହର,
ପ୍ରତାପଗଡ଼ରେ ଦ'ଦନ, କଂସାକବାଟ, ମଧୁରେଣ,
ଚୋଳା କନିଆଁ, ପାଷାଣୁ ଲୁହଝରେ,
ମୁନାଫଖୁଆ, ପଞ୍ଚାଳ, ଅମ୍ବାପାଲୀ, ଚନ୍ଦୀ,
କଳିଙ୍ଗ ବିଜୟ, ଖଇକଉଡ଼, ଅନ୍ତିମ
ଏକାଙ୍କିକା ନଅଟି

—ପ୍ରତିଖଣ୍ଡ ଟ ୩.୦୦—

ଘାତ, ଜୟଦେବ, ଅଭିଯାନ, ଦଶଭୂଜା, ମାଳତୀ, [illegible]ଧାନ,
ଶାଢଳାଦାସ, ଅସ୍ତଚନ୍ଦ୍ରମା, ସେଇଦିନ ସେଇରାତି,
ପରିଶୋଧ, ସେନାପତି
ଅତିବଡ଼ ଜଗନ୍ନାଥ ଦାସ, ପରୀକ୍ଷା

—ପ୍ରତିଖଣ୍ଡ ଟ ୨.୫୦—

ଜନ୍ମମାଟି,

—ଟ ୨.୦୦—

ବନ୍ଦୀ, କୋଇଲା କମ୍ପାନୀ, ସ୍ୱର୍ଣ୍ଣ-ହରିଣୀ

—ପ୍ରତିଖଣ୍ଡ ଟ ୧.୫୦—

ଆଦର୍ଶ ପରିବାର, ସାଞ୍ଝ ଫୁଲ

—ପ୍ରତିଖଣ୍ଡ ଟ ୧.୨୫—

ଅପବାଦ, ଗୋଟିଏ ରାତ, ଘରଘରଣୀ, ବନଷାର,
କଳାପାହାଡ଼, ଯୁଗେ ଯୁଗେ ଉତ୍କଳ

—ପ୍ରତିଖଣ୍ଡ ଟ ୧.୦୦—

ପ୍ରକାଶକ ଓ ପ୍ରାପ୍ତିସ୍ଥାନ

**ଇଉନାଇଟେଡ୍ ବୁକ୍ ହାଉସ୍**

ବାଲୁବଜାର, କଟକ-୨